# ପ୍ରାକ୍‌କଥନ

ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ପ୍ରବର୍ତ୍ତିତ ଶ୍ରୀହରିନାମସଂକୀର୍ତ୍ତନ ଆଜିକାଲି ପୃଥିବୀର ପ୍ରାୟ ସର୍ବତ୍ର ଅନୁଷ୍ଠିତ ହେଉଥିବାର ଦେଖାଯାଉଛି । ତାଙ୍କ ପ୍ରବର୍ତ୍ତିତ ଶ୍ରୀହରିକୀର୍ତ୍ତନର ଅନୁଶୀଳନ ସମସ୍ତେ କଲେ ମଧ୍ୟ ସେହି କୀର୍ତ୍ତନର ପ୍ରଣାଳୀ ସଂବନ୍ଧରେ କେହି ସଚେତନ ଥିବାର ବୋଧ ହେଉ ନାହିଁ । ସେହି ପ୍ରଣାଳୀ ସଂବନ୍ଧରେ ସେ ତାଙ୍କ ଶିକ୍ଷାଷ୍ଟକରେ ପରିଷ୍କାର ଭାବରେ ବୁଝାଇ ଦେଇଛନ୍ତି । ଉକ୍ତ ଶିକ୍ଷାଷ୍ଟକସ୍ଥ ପ୍ରତିଶ୍ଳୋକର ମର୍ମରୁ ଜଣାଯାଏ ଯେ ଶ୍ରୀହରିନାମକୀର୍ତ୍ତନବେଳେ ପ୍ରତିସ୍ତରରେ ହୃଦୟ ଇଷ୍ଟଦେବଙ୍କ ସୁଖାନୁସନ୍ଧାନମୟୀ ସ୍ମୃତିରେ ବିଜଡ଼ିତ ରହିବା ନିତାନ୍ତ ଆବଶ୍ୟକ । ହ୍ଲାଦିନୀ ଶକ୍ତିର କୃପା ବ୍ୟତୀତ ଏହି ସ୍ମୃତିକୁ ହୃଦୟରେ ଜାଗ୍ରତ ରଖିବା ଏକାନ୍ତ ଅସମ୍ଭବ । ହୃଦୟରେ ରଜସ୍ତମୋଗୁଣର ପ୍ରାଧାନ୍ୟ ଥିବା ପର୍ଯ୍ୟନ୍ତ ହ୍ଲାଦିନୀ ଶକ୍ତି ତହିଁରେ ପଶି ପାରିବେ ନାହିଁ । କାରଣ ଏହା ତାଙ୍କଠାରୁ ବିଜାତୀୟ ଜଡ଼ଗୁଣ । ସେହି କାରଣରୁ ହୃଦୟକୁ ରଜସ୍ତମୋଗୁଣମୁକ୍ତ କରାଇବା ପ୍ରାଥମିକ ଭକ୍ତିସାଧକର ଏକାନ୍ତ ପ୍ରୟୋଜନ । ଏହା କରିବାକୁ ହେଲେ ଅନ୍ତର୍ଯାମୀଙ୍କ ଦୃଷ୍ଟିରେ ସବୁ ପ୍ରାଣୀଙ୍କୁ ଆଦର କରିବା ବାଞ୍ଛନୀୟ । ସ୍ୱୟଂ ଶ୍ରୀଚୈତନ୍ୟ ମହାପ୍ରଭୁ ଶ୍ରୀମଦ୍‌ଭଗବଦ୍‌ଗୀତା ଓ ଶ୍ରୀମଦ୍‌ଭାଗବତାଦି ଶାସ୍ତ୍ରକୁ ଆଧାର କରି ଏହା ଜଗଦ୍‌ବାସୀ ସମସ୍ତଙ୍କୁ ଶିକ୍ଷା ଦେଇଛନ୍ତି ।

ମଦୀୟ ଶ୍ରୀଗୁରୁଦେବ ଶ୍ରୀଲ ପୁରୀଦାସ ଗୋସ୍ୱାମୀ ମଧ୍ୟ ତାଙ୍କ ଅନୁଗତ ସମସ୍ତଙ୍କୁ ଏହି ଶିକ୍ଷା ବିଷୟରେ ସର୍ବଦା ସଚେତନ କରାଇଛନ୍ତି ଏବଂ ଏହା ପାଳନ କରିବାକୁ ଦୃଢ଼ସ୍ୱରରେ କହିଛନ୍ତି । ଏହି ଗ୍ରନ୍ଥାରମ୍ଭରେ ସେହି ବିଷୟ କୁହାଯାଇଛି ।

ଭକ୍ତିସାଧକର ଆର୍ତ୍ତିଯୁକ୍ତ କ୍ରନ୍ଦନ ଉପରେ ମଧ୍ୟ ଶ୍ରୀଗୌରହରି ତାଙ୍କ ଶିକ୍ଷାଷ୍ଟକରେ ବିଶେଷ ଗୁରୁତ୍ୱ ଦେଇଛନ୍ତି । ଆର୍ତ୍ତିର କୃପାକର୍ଷିଣୀ ଶକ୍ତି ଅଛି ବୋଲି ଶ୍ରୀଜୀବ ଗୋସ୍ୱାମୀ ପ୍ରଭୁ ଶ୍ରୀଭକ୍ତିସନ୍ଦର୍ଭ ୧୮୪ତମ ଅନୁଚ୍ଛେଦରେ ଏହିପରି ଉଲ୍ଲେଖ କରିଛନ୍ତି–''ଭକ୍ତମାନଙ୍କ ଚିତ୍ତରେ ପ୍ରବିଷ୍ଟ ଭଗବଚ୍ଛକ୍ତିବିଶେଷ ହିଁ ଭକ୍ତି । ଭକ୍ତର ଦୈନ୍ୟହେତୁ ତାହା କୃପାଭାବଦ୍ୱାରା ଭଗବାନଙ୍କ ହୃଦୟକୁ ବିଗଳିତ କରେ । ଦୈନ୍ୟସମ୍ବନ୍ଧବଶତଃ ଭକ୍ତି ବହୁ ପରିମାଣରେ ଉଚ୍ଛଳିତ ହୁଏ ବୋଲି ଦୈନ୍ୟଯୁକ୍ତ ଭକ୍ତଙ୍କ ମଧ୍ୟରେ ଭକ୍ତିର ଆଧିକ୍ୟ ଦେଖାଯାଏ ।''

ଏଥିରୁ ଜଣାଗଲା ଯେ, ଭକ୍ତହୃଦୟର ଆର୍ତ୍ତି ହିଁ ଆର୍ତ୍ତବନ୍ଧୁ ଭଗବାନଙ୍କ ହୃଦୟକୁ ବିଗଳିତ କରେ ଏବଂ ସେତେବେଳେ ସେ ତାକୁ କୃପା କରିବାକୁ ବ୍ୟଗ୍ର ହୋଇପଡ଼ନ୍ତି । ଅବଶ୍ୟ ଏହି ଆର୍ତ୍ତି ହ୍ଲାଦିନୀର ହିଁ ବୃତ୍ତି । ଅନ୍ତର୍ଯାମିଦର୍ଶନ ପ୍ରଭାବରେ ହୃଦୟ ରଜସ୍ତମୋଗୁଣରୁ ମୁକ୍ତ ହେଲେ ତହିଁରେ ହ୍ଲାଦିନୀ ଶକ୍ତି ପ୍ରବେଶ କରି ଆର୍ତ୍ତିର ସଞ୍ଚାର କରନ୍ତି ଏବଂ ସେହି ଆର୍ତ୍ତି ହିଁ ଭଗବାନଙ୍କ କୃପାଦୃଷ୍ଟିର ଆକର୍ଷଣରେ ପରମ ସହାୟକ ହୋଇଥାଏ ।

ହ୍ଲାଦିନୀଶକ୍ତି ଜୀବର ହୃଦୟରେ ପ୍ରବେଶ ନ କରିବା ପର୍ଯ୍ୟନ୍ତ ସାଧକକୁ ଅଜାତରତି କର୍ମାଧିକାରୀ କୁହାଯାଏ । ହ୍ଲାଦିନୀ ଶକ୍ତି ତାହାର ହୃଦୟରେ ପ୍ରବେଶ କରିବାମାତ୍ରେ ସେ ଜାତରତି ହୋଇଯାଏ । ଏହି ଅବସ୍ଥାରେ ସେ ଶୁଦ୍ଧଭକ୍ତିସାଧନ ପାଇଁ ଯୋଗ୍ୟ ହୁଏ । ଏ କଥା ଶ୍ରୀରୂପ ଗୋସ୍ୱାମୀ ପ୍ରଭୁ ତାଙ୍କ ରଚିତ 'ଶ୍ରୀଭକ୍ତିରସାମୃତସିନ୍ଧୁ'ର ''ଉତ୍ପନ୍ନରତୟଃ ସମ୍ୟଙ୍ନୈର୍ବିଘ୍ନ୍ୟମନୁପାଗତାଃ । କୃଷ୍ଣସାକ୍ଷାତ୍କୃତୌ ଯୋଗ୍ୟାଃ ସାଧକାଃ ପରିକୀର୍ତ୍ତିତାଃ'' (୨।୧।୨୭୬) ଶ୍ଳୋକରେ ଉଲ୍ଲେଖ କରିଛନ୍ତି ।

ସୁତରାଂ ରଜସ୍ତମୋଗୁଣରେ ଆବିଷ୍ଟ ପ୍ରାଥମିକ ଭକ୍ତିସାଧକ ସ୍ୱରୂପତଃ କର୍ମୀ । ତେଣୁ ସେ ନାମକୀର୍ତ୍ତନାଦି ଭକ୍ତିର ସାଧନ କଲେ ମଧ୍ୟ ତାହା ଭକ୍ତି ନ ହୋଇ କର୍ମ ହିଁ ହୋଇଥାଏ । ସେଥିରେ ଭକ୍ତିଭାବ ମିଶ୍ରିତ ଥିବାରୁ ତାହାକୁ ଶ୍ରୀଜୀବ ଗୋସ୍ୱାମୀ 'କର୍ମମିଶ୍ରା ଭକ୍ତି', 'କର୍ମାର୍ପଣ' ବା 'ଆରୋପସିଦ୍ଧା ଭକ୍ତି' ଆଖ୍ୟା ଦେଇଛନ୍ତି ।

ଉପଯୁକ୍ତ ଶିକ୍ଷାର ଅଭାବହେତୁ ଏହି କର୍ମକୁ ଭକ୍ତି ବୋଲି ବିଚାରି ଲୋକେ ବିପଥଗାମୀ ହେଉଛନ୍ତି ଏବଂ ନିଜକୁ ଭକ୍ତ ଭାବିବା ହେତୁ ବୃଥା ଦମ୍ଭ ବଢ଼ିବାରୁ ଭକ୍ତିପଥଚ୍ୟୁତ ହେଉଛନ୍ତି । ମହତ୍କୃପାରୁ ଯେଉଁ ସାଧକ ପ୍ରତିଷ୍ଠାଶାକୁ ଓ ଧର୍ମ-ଅର୍ଥ-କାମ-ମୋକ୍ଷାଦି ସମସ୍ତ ସ୍ୱାର୍ଥକୁ ତ୍ୟାଗ କରି କେବଳ ପ୍ରଭୁଙ୍କ ପ୍ରୀତିବିଧାନଲକ୍ଷ୍ୟରେ ତାଙ୍କ ନାମ କୀର୍ତ୍ତନ କରିଥାଏ, ସେ ଭକ୍ତିମାତ୍ରକାମାତ୍ମକ କର୍ମାର୍ପଣକାରୀ ବୋଲାଏ । ଏହିପ୍ରକାର ସାଧକ ସାଧନକାଳରେ ଇଷ୍ଟଦେବଙ୍କ ଉଦ୍ଦେଶ୍ୟରେ ତାହାର ସ୍ୱାର୍ଥତ୍ୟାଗ ଓ ବ୍ୟାକୁଳ ପ୍ରାର୍ଥନାଦ୍ୱାରା ମହତ୍ଜନଙ୍କ କୃପାଦୃଷ୍ଟି ଆକର୍ଷଣ କରିପାରିବ ଏବଂ ତାଙ୍କ କୃପାରୁ ହ୍ଲାଦିନୀ ଶକ୍ତିକୁ ହୃଦୟରେ ଅବତୀର୍ଣ୍ଣ କରାଇ ନିଜକୁ ଶୁଦ୍ଧଭକ୍ତିସାଧନ ପାଇଁ ଯୋଗ୍ୟ କରିପାରିବ । ଏହା ହିଁ ସାଧନର କ୍ରମ ।

ଦମ୍ଭ ଭକ୍ତିର ପରିପନ୍ଥୀ ଓ ଆର୍ତ୍ତି ତାହାର ପୋଷକ । କି ଉପାୟରେ ଆର୍ତ୍ତି ବଢ଼ିବ, ତାହା ଏହି ଗ୍ରନ୍ଥରେ ବର୍ଣ୍ଣନା କରିବାର ପ୍ରୟାସ କରାଯାଇଛି ।

ସୁତରାଂ ଯେ ସର୍ବଦା ଏକାନ୍ତ ନିଃସ୍ୱାର୍ଥ ହୋଇ ବ୍ୟାକୁଳ ହୃଦୟରେ ଗୌରାନୁଗ ମହତ୍ଜନଙ୍କ କୃପାପ୍ରାର୍ଥନାପୂର୍ବକ ଗୌରନାମ କୀର୍ତ୍ତନ କରିପାରିବ, ସେ ଏହି ଜନ୍ମରେ ହିଁ ଜାତରତିର ଭୂମିକାକୁ ଉନ୍ନୀତ ହୋଇ ନିଜକୁ ଶୁଦ୍ଧଭକ୍ତିସାଧନ ପାଇଁ ଯୋଗ୍ୟ କରିପାରିବ । ସ୍ୱାର୍ଥତ୍ୟାଗର ଜ୍ୱଳନ୍ତ ଉଦାହରଣ ଶ୍ରୀବାସ ପଣ୍ଡିତ । ସେ ତାହାଙ୍କ ଏକମାତ୍ର ପୁତ୍ରର ବିୟୋଗଦୁଃଖକୁ ସମ୍ପୂର୍ଣ୍ଣ ପାଶୋରି ଦେଇ ଯେପରି ଉତ୍ଫୁଲ୍ଲ ହୃଦୟରେ ଗୌରସୁନ୍ଦରଙ୍କ ସଂକୀର୍ତ୍ତନରେ ଯୋଗ ଦେଇଥିଲେ, ସେପରି ଦୃଷ୍ଟାନ୍ତ ଜଗତରେ ବିରଳ । ଶ୍ରୀଗୌରହରି ମଧ୍ୟ ତାଙ୍କ ଉପଦିଷ୍ଟ ଶିକ୍ଷାଷ୍ଟକର ଅଷ୍ଟମ ଶ୍ଳୋକରେ ଇଷ୍ଟଦେବଙ୍କ ଉଦ୍ଦେଶ୍ୟରେ ଯେଉଁ ଅଭୂତପୂର୍ବ ସ୍ୱାର୍ଥତ୍ୟାଗ କଥା ଶିକ୍ଷା ଦେଇଛନ୍ତି, ତାହା ଯେ ଗୌରାନୁରାଗୀ ଭକ୍ତିସାଧକର ଆଲୋକସ୍ତମ୍ଭ, ଏହା କହିବା ନିଷ୍ପ୍ରୟୋଜନ ।

ପୁଣି ଶ୍ରୀଗୌରଭଜନ କଥା, ନାମାଚାର୍ଯ ଶ୍ରୀଳ ହରିଦାସ ଠାକୁର ତାଙ୍କ ନିର୍ଯାଣ ସମୟରେ ନିଜେ ଆଚରଣ କରି ଯେପରି ଶିକ୍ଷା ଦେଇଯାଇଛନ୍ତି ଏବଂ ଶ୍ରୀଳ ପ୍ରବୋଧାନନ୍ଦ ସରସ୍ୱତୀ ଓ ଶ୍ରୀଳ ନରୋତ୍ତମ ଠାକୁର ମଧ୍ୟ ଏହି ଭଜନ କଥା ସେହିପରି ବହୁଭାବରେ ଶିକ୍ଷା ଦେଇଯାଇଛନ୍ତି । ଏମାନଙ୍କ ଉଚ୍ଛିଷ୍ଟଭୋଜୀ କିଙ୍କରସୂତ୍ରେ ଏହି ଶ୍ରୀଗୌରନାମକୁ ଏକାନ୍ତ-ଭାବରେ ଆଶ୍ରୟ କରିବା ହିଁ ସାଧନାନୁରାଗୀ ପ୍ରତ୍ୟେକ ବ୍ୟକ୍ତିର ଏକାନ୍ତ କର୍ତ୍ତବ୍ୟ ।

ବସ୍ତୁତଃ ବିଷ୍ଣୁସ୍ମରଣ ହିଁ ଶାସ୍ତ୍ରକଥିତ ସବୁବିଧିର ମୂଳ । ତେଣୁ ସର୍ବକ୍ଷଣ ମନକୁ ବିଷ୍ଣୁସ୍ମରଣରେ ନିଯୁକ୍ତ ରଖିବା ହିଁ ସର୍ବଶ୍ରେଷ୍ଠ ସାଧନ ଏବଂ ଏହାର ଚରମ ଫଳ ଭଗବତ୍‌ପ୍ରାପ୍ତି ।

ସେହିପରି ଶ୍ରୀଗୌରହରିଙ୍କ ଉପଦିଷ୍ଟ ହରିନାମକୀର୍ତ୍ତନରେ ହରିଙ୍କ ସ୍ମୃତି ରହିବା ଯେ ଅନିବାର୍ଯ ତାହା ଜଣାଯାଏ । ସ୍ମୃତିହୀନ ହରିନାମକୀର୍ତ୍ତନ ବା କୌଣସି ଭକ୍ତ୍ୟଙ୍ଗର ଅନୁଷ୍ଠାନ ପୁଣ୍ୟକର୍ମର ଫଳ ହିଁ ଦେଇଥାଏ । ତେଣୁ ଭକ୍ତିସାଧକ ସର୍ବଦା ଏ ବିଷୟରେ ସଚେତନ ରହିବା ଅତ୍ୟାବଶ୍ୟକ ।

ବିଷ୍ଣୁସ୍ମରଣ ହେଲା ମନର ପ୍ରାଣ । ମନରେ ସର୍ବକ୍ଷଣ ବିଷ୍ଣୁସ୍ମୃତି ଥିଲେ ତହିଁରେ ମାୟାକୃତ ଅସଚ୍ଚିନ୍ତା ପଶି ପାରିବ ନାହିଁ । ଦେହରେ ପ୍ରାଣ ଥିବା ପର୍ଯନ୍ତ ଗୋଟିଏ ଲୋକ ଅସୁସ୍ଥ ଅବସ୍ଥାରେ ରାସ୍ତାରେ ପଡ଼ିଥିଲେ ମଧ୍ୟ ବିଲୁଆ, କୁକୁର କି କୁଆ କେହି ତା' ପାଖ ମାଡ଼ିବେ ନାହିଁ, କିନ୍ତୁ ପ୍ରାଣ ଚାଲିଗଲାମାତ୍ରେ ସମସ୍ତେ ତାକୁ ବେଢ଼ିଯିବେ । ସେହିପରି ମନରେ ବିଷ୍ଣୁସ୍ମୃତି ଥିଲା ପର୍ଯନ୍ତ ମାୟାଜାତ ଅସଚ୍ଚିନ୍ତା ତହିଁରେ କଦାପି ପଶି ପାରିବ ନାହିଁ । ସେହି କାରଣରୁ ବିଷ୍ଣୁସ୍ମୃତି ଉପରେ ଶାସ୍ତ୍ର ପ୍ରାଧାନ୍ୟ ଦେଲେ ଏବଂ ଏହାକୁ ଶାସ୍ତ୍ରକଥିତ ସବୁ ବିଧିର ମୂଳ ବୋଲି କହିଲେ ।

ଶ୍ରୀମଦ୍ଭାଗବତରେ ମଧ୍ୟ କୁହାଯାଇଛି—

କୀଟଃ ପେଶସ୍କୃତା ରୁଦ୍ଧଃ କୁଡ୍ୟାୟାଂ ତମନୁସ୍ମରନ୍ ।
ସଂରମ୍ଭଭୟଯୋଗେନ ବିନ୍ଦତେ ତତ୍‌ସ୍ୱରୂପତାମ୍ ॥"

(ଶ୍ରୀଭା: ୭।୧।୨୮)

ଭ୍ରମର କୌଣସି କୀଟକୁ ଆଣି ନିଜେ ତିଆରି କରିଥିବା ମାଟି ଗାତରେ ଆବଦ୍ଧ ରଖି ତାକୁ ବିନ୍ଧୁଥାଏ । ସେହି କୀଟ ଭୟ ଏବଂ କ୍ରୋଧବଶତଃ ଯେପରି କେବଳ ସେହି ଭ୍ରମରକୁ ସ୍ମରଣ କରୁ କରୁ ବଞ୍ଚି ଥାଉ ଥାଉ ଭ୍ରମରର ସ୍ୱରୂପ ଲାଭ କରେ ଅର୍ଥାତ୍ ଭ୍ରମରର ଦେହ ଲାଭ କରେ, ସେହିପରି କେହି କ୍ରୋଧ ଓ ଭୟରେ ଶ୍ରୀକୃଷ୍ଣଙ୍କୁ ସ୍ମରଣ କଲେ ମଧ୍ୟ ନିଷ୍ପାପ ହୋଇ ତାଙ୍କ ପାଦପଦ୍ମ ଲାଭ କରେ ।

ସ୍ମରଣର ଏହି ଅଦ୍ଭୁତ ପ୍ରଭାବ । ତେଣୁ ସର୍ବକ୍ଷଣ ମନକୁ ବିଷ୍ଣୁସ୍ମରଣରେ ନିଯୁକ୍ତ ରଖିବା ଆବଶ୍ୟକ ।

ନାରଦୀୟ ପୁରାଣରେ କୁହାଯାଇଛି–

ବିଷୟାନ୍ ଧ୍ୟାୟତଃ ଚିତ୍ତଂ ବିଷୟେଷୁ ବିଷଜ୍ଜତେ
ମାମନୁସ୍ମରତଃ ଚିତ୍ତଂ ମୟ୍ୟେବ ପ୍ରବିଲୀୟତେ ।।

ଅର୍ଥାତ୍ ମନୁଷ୍ୟର ଚିତ୍ତ ବିଷୟକୁ ଧ୍ୟାନ କରୁ କରୁ ବିଷୟାବିଷ୍ଟ ହୋଇଥାଏ । ସେହିପରି ଯେଉଁ ଚିତ୍ତ ମୋ ସ୍ମରଣରେ ନିବିଷ୍ଟ ରହେ, ସେ ମୋଠାରେ ଲୀନ ହୁଏ ।

ହେ ସୁଧୀ ପାଠକବୃନ୍ଦ ! ଏ ବିଦ୍ୟାବୁଦ୍ଧିହୀନ ନରାଧମର ମସ୍ତକରେ ପାଦପଦ୍ମ ରଖି କୃପାଶୀର୍ବାଦ କରନ୍ତୁ ଯେପରି ସେ ଏହି ଜନ୍ମରେ ହିଁ ଅନ୍ତର୍ଯାମିଦୃଷ୍ଟିରେ ସମସ୍ତ ପ୍ରାଣୀଙ୍କୁ ସମ୍ମାନ ଦେଇ ନିଜର ସମସ୍ତ ସ୍ୱାର୍ଥ ତ୍ୟାଗ କରି ସର୍ବଦା ଆର୍ତ୍ତିଯୁକ୍ତ ବ୍ୟାକୁଳ ପ୍ରାର୍ଥନାଦ୍ୱାରା ନିଜକୁ ମହତ୍‌କୃପାବରଣର ଯୋଗ୍ୟ କରିପାରେ ଏବଂ ସର୍ବଦା ଶ୍ରୀଗୌରନାମକୀର୍ତ୍ତନରେ ରତ ରହି ନିଜକୁ ପ୍ରେମଲାଭ ପାଇଁ ଉପଯୁକ୍ତ କରିପାରେ । ଇତି ।

କୃପାଭିକ୍ଷୁ
ଶ୍ରୀଦିବାକର ମିଶ୍ର

# ସୂଚୀପତ୍ର

## ପୂର୍ବ ଯାଦୃଚ୍ଛିକ ମହତ୍‌କୃପାର ଫଳ

ସୁବଳର ସଂସାର ପ୍ରତି ପିଲାଦିନୁ ବିତୃଷ୍ଣା । ସେ ଅନେକ ସମୟରେ କେଉଁ ରାସ୍ତାରେ ଗଲେ ମଙ୍ଗଳ ହେବ, ସେହି ରାସ୍ତା କଥା ଚିନ୍ତା କରୁଥାଏ । ଦିନେ ବାବାଜୀ ଶ୍ୟାମାକାନ୍ତ ଦାସଙ୍କ କଥା ଶୁଣିଲା । ତାଙ୍କ ଭଜନପରାୟଣତା କଥା ଶୁଣି ତାଙ୍କ ନିକଟକୁ ଯିବାକୁ ତା'ର ବହୁତ ଇଚ୍ଛା ହେଲା । ସେ ଦିନେ ସୁଯୋଗ ଉଣ୍ଡି ତାଙ୍କ ନିକଟରେ ଯାଇ ପହଞ୍ଚିଲା ।

ବାବାଜୀ ମହାରାଜଙ୍କୁ ପ୍ରଣାମ କରିବା ପରେ ସେ ତାକୁ ଆଦର ସହକାରେ ନିକଟରେ ବସାଇ ତା'ର ଆସିବାର କାରଣ ପଚାରିଲେ ।

**ସୁବଳ**—ଆଜ୍ଞା, ଏ ସଂସାରର ଅସାରତା କଥା ସବୁବେଳେ ମୋ ମନକୁ ଘାରୁଛି । କେଉଁ ରାସ୍ତାରେ ଗଲେ ମୁଁ ଚିରଶାନ୍ତି ପାଇପାରିବି, ସେ ରାସ୍ତା ମୋତେ ଦୟା କରି ଦେଖାଇଲେ ମୁଁ ସେହି ରାସ୍ତାରେ ଯିବାକୁ ଆପ୍ରାଣ ଚେଷ୍ଟା କରିବି ।

ମୁଁ ବହୁ ସନ୍ଥଙ୍କୁ ସାଧନର ରାସ୍ତା କଥା ପଚାରିଛି କିନ୍ତୁ କାହାରିଠାରୁ ସନ୍ତୋଷଜନକ ଉତ୍ତର ପାଇ ନାହିଁ । ମୋର ଯାହା ଧାରଣା ସମସ୍ତେ ସାଧନଟାକୁ ଗୋଟିଏ ଲାଭଜନକ ବ୍ୟବସାୟରେ ପରିଣତ କଲେଣି ।

ମୁଁ ମୋର ଜଣେ ବନ୍ଧୁଙ୍କ ସଙ୍ଗେ ଆଲୋଚନା କରୁଥିଲି ଯେ, ଏ ସଂସାରଟା ତ ଅତି ଅସାର । ତେଣୁ ଏହି ସଂସାର ଚିନ୍ତାରେ ସବୁବେଳେ ବୁଡ଼ି ନ ଯାଇ ଭଗବଚ୍ଚିନ୍ତାରେ ମନ ଦେବା ଉଚିତ । ତା' ଉତ୍ତରରେ ସେ ମୋତେ ଥଟ୍ଟା କଲା ଭଳି କହିଲା ଯେ, ଯେଉଁ ଭଗବାନଙ୍କୁ କେହି ଜଣେ ହେଲେ ଦେଖି ନାହାନ୍ତି କି ଯାହାଙ୍କ ବିଷୟରେ କୌଣସି ଅନୁଭୂତି ଏହି ସଂସାରରେ କାହାରି ନାହିଁ, ସେହି ଭଗବାନଙ୍କ କଥା ଅନ୍ଧଙ୍କ ପରି ଚିନ୍ତା କରି ଲାଭ କଅଣ? ଏହାଦ୍ୱାରା କେବଳ ସମୟ ନଷ୍ଟ ଛଡ଼ା ଆଉ କଅଣ ହେବ ? ମୁଁ ତାକୁ କିଛି କହିପାରିଲି ନାହିଁ । ଏହାର ଉତ୍ତର କଅଣ ହେବା ଉଚିତ ?

**ବାବାଜୀ ମହାରାଜ**—କେହି ଭଗବାନଙ୍କୁ ଦେଖିନାହାନ୍ତି ବୋଲି ସେ ଜାଣିଲା କିପରି ? ଯେ ନିଜେ ଅନ୍ଧ, ଅନ୍ୟ ଲୋକ କଅଣ କରୁଛି ସେ ଜାଣିବ କିପରି ? ବେଦ ସ୍ୱୟଂ ଭଗବାନଙ୍କର ଶ୍ରୀମୁଖବାକ୍ୟ ହୋଇଥିବାରୁ ଏହା ଅଭ୍ରାନ୍ତ । ବେଦର ସାରାଂଶ ହେଲା ଶ୍ରୀମଦ୍ଭାଗବତ, ଯାହା ପୁରାଣମାନଙ୍କ ମଧ୍ୟରେ ମହାପୁରାଣ । ଏହି ଭାଗବତର ବାଣୀ ଅତି ବୈଜ୍ଞାନିକ ଓ ନିରାଟ ସତ୍ୟ । ସେଥିପାଇଁ କୁହାଯାଇଛି, 'ବିଦ୍ୟା ଭାଗବତାବଧିଃ' ଅର୍ଥାତ୍ ସମସ୍ତ ବିଦ୍ୟା ଭାଗବତରେ ଶେଷ ହୋଇଛି, ଏହା ପରେ ଆଉ କୌଣସି ବିଦ୍ୟା ନାହିଁ । ଏହି ଭାଗବତର ଉପଦେଶକୁ ମାନି ଯେଉଁମାନେ ଚାଲୁଛନ୍ତି ସେମାନେ ତାର ଫଳ ଉପଲବ୍ଧି କରୁଛନ୍ତି । ଏହି ଭାଗବତକୁ ଅବଲମ୍ବନ କରି ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଅନୁଗତ

ଗୋସ୍ୱାମୀମାନେ ଶ୍ରୀଷଟ୍‌ସନ୍ଦର୍ଭ, ଶ୍ରୀବୃହଦ୍‌ଭାଗବତାମୃତ ଓ ଶ୍ରୀଭକ୍ତିରସାମୃତସିନ୍ଧୁ ଆଦି ବହୁ ଗ୍ରନ୍ଥ ରଚନା କରି ଯାଇଛନ୍ତି । ସେହିସବୁ ଗ୍ରନ୍ଥରେ ଯେଉଁ ରାସ୍ତାରେ ଗଲେ ଭଗବାନଙ୍କ ଦର୍ଶନ ପାଇ ପାରିବ, ତାହା ପ୍ରାଞ୍ଜଳଭାବରେ ବର୍ଣ୍ଣିତ ହୋଇଛି । ଏହିସବୁ ଗ୍ରନ୍ଥ ଆଲୋଚନା ନ କରି ଭଗବାନଙ୍କ ବିଷୟରେ ବୃଥା ବିତଣ୍ଡା କରିବା ନିରର୍ଥକ ।

**ସୁବଳ**—ଆଜ୍ଞା, ଭଗବାନଙ୍କ ଦର୍ଶନ ପାଇବା ବିଷୟରେ ସେସବୁ ଗ୍ରନ୍ଥରେ କଅଣ ବର୍ଣ୍ଣିତ ହୋଇଛି ଦୟା କରି କହିଲେ କୃତାର୍ଥ ହୁଅନ୍ତି ।

**ବାବାଜୀ ମହାରାଜ**—ସେହିସବୁ ବିଷୟ ହିଁ ମୁଁ ତୁମକୁ କହିବି । ଯେଉଁମାନେ ଇଂଜିନିଅର କି ଡାକ୍ତର ହେଉଛନ୍ତି, ଦୀର୍ଘ ୧୮।୨୦ ବର୍ଷ କଠିନ ପରିଶ୍ରମ କରିବା ପରେ ହିଁ ସେମାନେ ଏହି ପଦବୀ ଲାଭ କରିବା ପାଇଁ ଯୋଗ୍ୟ ହେଉଛନ୍ତି, ଆଉ ଭଗବାନଙ୍କ ଦର୍ଶନ ପାଇଁ କୌଣସି କଷ୍ଟ ନ କରି କିପରି ଜଣେ ତାଙ୍କ ଦର୍ଶନ ପାଇଯିବ ? ସେଥିପାଇଁ କଠିନ ଅଧ୍ୟବସାୟ ଓ ସ୍ୱାର୍ଥତ୍ୟାଗ ଦରକାର । ପୂର୍ବଜନ୍ମରେ କୌଣସି ସାଧୁଙ୍କ ଯଦୃଚ୍ଛା ଅର୍ଥାତ୍ ଅଚାନକ କୃପା ତୁମ ପ୍ରତି ଅଛି । ସେହି କାରଣରୁ ତୁମର ନିଜର ମଙ୍ଗଳଚିନ୍ତା ହୃଦୟରେ ଜାଗିଛି ।

## ଶ୍ରୀମଦ୍‌ଭାଗବତ ହିଁ ସର୍ବଶ୍ରେଷ୍ଠ ପ୍ରମାଣ

ଆମର ସାଧନପଥ ବିଷୟରେ ଜାଣିବା ପୂର୍ବରୁ ଆମ ସ୍ୱରୂପ କଥା ବିଚାର କରାଯାଉ । ଏସବୁ ବିଷୟରେ ଆଲୋଚନା କରିବା ପୂର୍ବରୁ ସବୁ ବିଷୟରେ ଆମର ଗୋଟିଏ ପ୍ରମାଣ ଆବଶ୍ୟକ । ପ୍ରମାଣ ଦଶ ପ୍ରକାର । ତା ମଧ୍ୟରେ ଶାସ୍ତ୍ରପ୍ରମାଣ ହିଁ ସର୍ବଶ୍ରେଷ୍ଠ । ଶାସ୍ତ୍ର ମଧ୍ୟରେ ବେଦ ହେଲା ପ୍ରଥମ ଶାସ୍ତ୍ର । ଏହାକୁ କେହି ଲେଖି ନାହାନ୍ତି । ଏହା ସ୍ୱୟଂ ଶ୍ରୀଭଗବାନଙ୍କ ଶ୍ରୀମୁଖବାକ୍ୟ । ଏହାର ସାରାଂଶ ହେଲା ଶ୍ରୀମଦ୍‌ଭାଗବତ । ଏଥିରେ ସାଧନପଥ ବିଷୟରେ ପ୍ରାଞ୍ଜଳଭାବରେ ବର୍ଣ୍ଣନା କରା ହୋଇଛି । ଏଥିରେ ଯାହା ବର୍ଣ୍ଣିତ ହୋଇଛି, ତାହାର ସାରମର୍ମ ହେଲା ଏହି ଯେ, ଆମେ ଯେଉଁ ଭଗବାନଙ୍କୁ ଭୁଲିଛୁ, ସେହି ଭଗବାନଙ୍କୁ ସର୍ବଦା ସ୍ମରଣ କରିବା ହିଁ ସର୍ବଶ୍ରେଷ୍ଠ ସାଧନ ।

**ସୁବଳ**—ବେଦରେ ତ ମୁଖ୍ୟତଃ କର୍ମକାଣ୍ଡର ବ୍ୟବସ୍ଥା ହିଁ ଦିଆ ହୋଇଛି ।

**ବାବାଜୀ ମହାରାଜ**—ହଁ, ବେଦରେ ମୁଖ୍ୟତଃ କର୍ମକାଣ୍ଡର ବିଧାନ ଥିଲେ ମଧ୍ୟ ସ୍ମୃତିଶାସ୍ତ୍ରରେ ସର୍ବତ୍ର ବିଷ୍ଣୁସ୍ମରଣକୁ ହିଁ ପ୍ରାଧାନ୍ୟ ଦିଆଯାଇଛି ଏବଂ ଏହି ବିଷ୍ଣୁସ୍ମୃତି ବ୍ୟତୀତ କର୍ମକାଣ୍ଡ ବୃଥା ବୋଲି ମଧ୍ୟ ଶ୍ରୀମଦ୍‌ଭାଗବତରେ କୁହାଯାଇଛି । ଶ୍ରୀମଦ୍‌ଭାଗବତ ଓ ଶ୍ରୀମଦ୍‌ଭଗବଦ୍‌ଗୀତାରେ ମଧ୍ୟ ସେହି ବିଷ୍ଣୁସ୍ମରଣକୁ ପ୍ରଧାନ ସାଧନରୂପେ ପ୍ରତିପାଦିତ କରା ହୋଇଛି ।

**ସୁବଳ**—ଆମକୁ ତ ଭଗବାନ୍ ସୃଷ୍ଟି କରିଛନ୍ତି । ଆମେ ପୁଣି ତାଙ୍କୁ ଭୁଲିଲୁ କାହିଁକି ?

## ଜୀବର ସ୍ୱରୂପ

**ବାବାଜୀ ମହାରାଜ**—ଭଗବାନଙ୍କର ତିନୋଟି ଶକ୍ତି; ଯଥା—ଚିଚ୍ଛକ୍ତି, ଜୀବଶକ୍ତି ଓ ମାୟା ଶକ୍ତି । ଚିଚ୍ଛକ୍ତି ଭଗବାନଙ୍କ ସ୍ୱରୂପରେ ନିତ୍ୟ ବିରାଜିତ । ତେଣୁ ତାକୁ ସ୍ୱରୂପ ଶକ୍ତି ମଧ୍ୟ କୁହାଯାଏ । ଏହି ସ୍ୱରୂପ ଶକ୍ତିର ତିନୋଟି ବୃତ୍ତି; ଯଥା—ସନ୍ଧିନୀ, ସମ୍ବିତ୍ ଓ ହ୍ଲାଦିନୀ । ସନ୍ଧିନୀ ଶକ୍ତିର କାର୍ଯ୍ୟ ହେଲା ସତ୍ତା ବିସ୍ତାର କରିବା । ଭଗବାନଙ୍କ ବାସଗୃହ, ପରିଚ୍ଛଦ, ଲୀଳାର ଯାବତୀୟ ଉପକରଣ ଓ ଲୀଳାପରିକର ସୃଷ୍ଟି ପ୍ରଭୃତି ଏହାର କାର୍ଯ୍ୟ । ସମ୍ବିତ୍‌ର କାର୍ଯ୍ୟ ହେଲା ଜ୍ଞାନ ଜାତ କରାଇବା । ନନ୍ଦଯଶୋଦାଙ୍କୁ ଶ୍ରୀକୃଷ୍ଣଙ୍କର ପିତାମାତାଜ୍ଞାନ ଓ ଶ୍ରୀକୃଷ୍ଣଙ୍କର ନିଜକୁ ନନ୍ଦଯଶୋଦାଙ୍କ ପୁତ୍ରଜ୍ଞାନ, ବଳଦେବଙ୍କୁ ନିଜ ଭାଇଜ୍ଞାନ, ରୁକ୍ମିଣୀ ଇତ୍ୟାଦିଙ୍କୁ ପତ୍ନୀଜ୍ଞାନ—ଏହା ସମ୍ବିତ୍ ଶକ୍ତିର ହିଁ କାର୍ଯ୍ୟ । ତୃତୀୟଟି ହେଲା ହ୍ଲାଦିନୀ । ସର୍ବେନ୍ଦ୍ରିୟଦ୍ୱାରା ସର୍ବତୋଭାବରେ ଶ୍ରୀକୃଷ୍ଣଙ୍କ ପ୍ରୀତିବିଧାନ ହିଁ ଏହି ହ୍ଲାଦିନୀର କାର୍ଯ୍ୟ । ଶ୍ରୀରାଧାରାଣୀ ହେଲେ ଏହି ହ୍ଲାଦିନୀର ମୂର୍ତ୍ତିମାନ୍ ପ୍ରକାଶ ।

ଏହିପରିଭାବରେ ସର୍ବମୟକର୍ତ୍ତା ଭଗବାନ୍ ନିଜେ ନିଜର ସମସ୍ତପ୍ରକାର ଆନନ୍ଦର ବ୍ୟବସ୍ଥା କରିଛନ୍ତି ।

ଏ ଗଲା ଚିଚ୍ଛକ୍ତି କଥା । ଏହାପରେ ହେଲା ମାୟା ଶକ୍ତି । ଏହା ଭଗବତ୍‌ସୃଷ୍ଟ ଗୋଟିଏ ଶକ୍ତି ହେଲେ ମଧ୍ୟ ତାଙ୍କ ଅଚିନ୍ତ୍ୟ ଶକ୍ତିପ୍ରଭାବରେ ତାଙ୍କଠାରୁ ଦୂରରେ ହିଁ ଥାଏ । ଯଥା—ସାପକାତି । ସାପକାତି ସାପ ଦେହରୁ ବାହାରିଥିଲେ ମଧ୍ୟ ଥରେ ସେ କାତିକୁ ଛାଡ଼ି ଦେଲା ପରେ ଆଉ ତା ସଙ୍ଗେ ସାପର କୌଣସି ସମ୍ବନ୍ଧ ନ ଥାଏ । ଭଗବାନ୍ ଓ ମାୟାର ସମ୍ବନ୍ଧ ଠିକ୍ ସେହିପରି ।

ତୃତୀୟଟି ହେଲା ଜୀବଶକ୍ତି । ଏହାକୁ ତଟସ୍ଥା ଶକ୍ତି ମଧ୍ୟ କୁହାଯାଏ । କାରଣ ଏହା ଶ୍ରୀଭଗବାନଙ୍କ ଆଡ଼କୁ ଉନ୍ମୁଖ ହୋଇପାରେ ଏବଂ ମାୟା ଆଡ଼କୁ ମଧ୍ୟ ଉନ୍ମୁଖ ହୋଇପାରେ । ଅନାଦିକାଳରୁ ଅର୍ଥାତ୍ ଜୀବର ସୃଷ୍ଟିଦିନଠାରୁ ଦୈବକ୍ରମେ ଯେଉଁ ଜୀବ ପ୍ରତି ଶ୍ରୀଭଗବାନଙ୍କ ସ୍ୱରୂପଶକ୍ତିର ଦୃଷ୍ଟି ପଡ଼ିଗଲା, ସେ ହେଲା ନିତ୍ୟମୁକ୍ତ ଓ ସଦା ଶ୍ରୀଭଗବାନଙ୍କ ପ୍ରତି ଉନ୍ମୁଖ, ଆଉ ଯାହା ପ୍ରତି ଏହି ସ୍ୱରୂପଶକ୍ତିର ଦୃଷ୍ଟି ପଡ଼ିଲା ନାହିଁ, ସେ ହେଲା ନିତ୍ୟବଦ୍ଧ । ଅର୍ଥାତ୍ ମାୟାବଦ୍ଧ ହେବା ମୁହୂର୍ତ୍ତରୁ ମାୟାମୁକ୍ତ ହେବା ପର୍ଯ୍ୟନ୍ତ ବଦ୍ଧ ।

ଆମ ସୃଷ୍ଟି କିପରି ହେଲା ସେ ବିଷୟରେ କହୁଛି । ଜୀବ ଶ୍ରୀଭଗବାନଙ୍କର ଅଣୁଚିତ୍ ଅଂଶ । ପଥରକୁ ଛେଚି ଛେଚି ଧୂଳି ପରି କରିଦେଲେ ସେହି ଧୂଳିକୁ ଯେପରି ପଥରର ଅଂଶ କୁହାଯାଏ, ଜୀବ କିନ୍ତୁ ଶ୍ରୀଭଗବାନଙ୍କର ସେପରି ଅଂଶ ନୁହେଁ । ସୂର୍ଯ୍ୟକିରଣ ଯେପରି ସୂର୍ଯ୍ୟଙ୍କ ଶକ୍ତିରୂପକ ଅଂଶ, ଜୀବ ସେହିପରି ଭଗବାନଙ୍କ ଶକ୍ତିରୂପକ ଅଂଶ । ଜୀବକୁ ପରମାତ୍ମା ଏହି ଜୀବଶକ୍ତିରୁ ହିଁ ସୃଷ୍ଟି କରିଛନ୍ତି । ସେହି ଜୀବ ଭିତରେ ମନୁଷ୍ୟ ହେଲା ସର୍ବଶ୍ରେଷ୍ଠ । ସୁତରାଂ ଆମେ ସମସ୍ତେ ତାଙ୍କରି ସୃଷ୍ଟ । କିନ୍ତୁ ଆମ ମଧ୍ୟରେ ସ୍ୱରୂପଶକ୍ତି ନ ଥିବାରୁ ସ୍ୱରୂପଶକ୍ତିର

ହ୍ଲାଦିନୀ ବୃତ୍ତି ଆମ ମଧ୍ୟରେ ନାହିଁ । ତା ପରିବର୍ତ୍ତେ ଅଛି ସତ୍ତ୍ୱ, ରଜଃ ଓ ତମୋରୂପକ ମାୟିକ ତ୍ରିଗୁଣ । ଏହା ମାୟିକ ହୋଇଥିବାରୁ କେବଳ ଜୀବସ୍ୱରୂପରେ ହିଁ ଅଛି, ଶ୍ରୀଭଗବାନଙ୍କ ସ୍ୱରୂପରେ ନାହିଁ । ଏ ବିଷୟରେ ଶ୍ରୀବିଷ୍ଣୁପୁରାଣ (୧।୧୨।୬୯) ରେ ବର୍ଣ୍ଣିତ ହୋଇଛି–

''ହ୍ଲାଦିନୀ ସନ୍ଧିନୀ ସମ୍ବିତ୍ ତ୍ୱୟ୍ୟେକା ସର୍ବସଂସ୍ଥିତୌ ।
ହ୍ଲାଦତାପକରୀ ମିଶ୍ରା ତ୍ୱୟି ନୋ ଗୁଣବର୍ଜିତେ ॥''

ଅର୍ଥାତ୍ ହେ ଭଗବନ୍ ! ତୁମ ସ୍ୱରୂପଭୂତା ହ୍ଲାଦିନୀ, ସନ୍ଧିନୀ ଓ ସଂବିତ୍–ଏହି ତ୍ରିବିଧ ଶକ୍ତି ସର୍ବଶକ୍ତିମାନ୍ ତୁମଠାରେ ଅଛି (କିନ୍ତୁ ଜୀବହୃଦୟରେ ନାହିଁ) ଆଉ ହ୍ଲାଦକରୀ ଅର୍ଥାତ୍ ମନର ପ୍ରସନ୍ନତାବିଧାୟିନୀ ସାତ୍ତ୍ୱିକୀ, ତାପକାରୀ, ଅର୍ଥାତ୍ ବିଷୟବିୟୋଗାଦିରେ ମାନସିକ ତାପଦାୟିନୀ ତାମସୀ ଏବଂ ସୁଖହେତୁ ପ୍ରସନ୍ନତା ଓ ଦୁଃଖଜନିତ ତାପ ଏହି ଉଭୟ ମିଶ୍ରା ରାଜସୀ–ଏହି ତିନୋଟି ଶକ୍ତି ତୁମେ ପ୍ରାକୃତ ସତ୍ତ୍ୱାଦିଗୁଣବର୍ଜିତ ବୋଲି ତୁମଠାରେ ନାହିଁ (କିନ୍ତୁ ଜୀବଠାରେ ଅଛି) ।

ଏହି ତ୍ରିଗୁଣ ଜୀବ ସ୍ୱରୂପରେ ନିତ୍ୟ ଅବସ୍ଥିତ ରହି ତାହାକୁ ଶ୍ରୀଭଗବାନଙ୍କ ସ୍ମରଣ ବା ତାଙ୍କ ସୁଖଚିନ୍ତା ପରିବର୍ତ୍ତେ ନିଜ ସୁଖଚିନ୍ତାରେ ବୁଡ଼ାଇ ରଖିଛି । ଏପରି ଅବସ୍ଥାରେ ଆମକୁ ଶ୍ରୀଭଗବାନଙ୍କ ଉପାସନା କରିବା ପାଇଁ ସାଧୁମାନେ ଉପଦେଶ ଦେଲେ ମଧ୍ୟ ଆମର ଉପାସନା ନିଜ ସୁଖ ସାଧନ ଉଦ୍ଦେଶ୍ୟରେ ହିଁ ହେବ । ତାଙ୍କ ସୁଖ ଉଦ୍ଦେଶ୍ୟରେ କଦାପି ହେବ ନାହିଁ କିମ୍ବା ତାଙ୍କ ଉଦ୍ଦେଶ୍ୟରେ ସ୍ୱାର୍ଥତ୍ୟାଗର ପ୍ରବୃତ୍ତି ମଧ୍ୟ ଜାଗିବ ନାହିଁ । ତେଣୁ ଏହି ସତ୍ତ୍ୱ, ରଜଃ ଓ ତମୋରୂପକ ମାୟିକ ଗୁଣ ଆମ ହୃଦୟରୁ ଦୂର ନ ହେବା ପର୍ଯ୍ୟନ୍ତ ଆମର ଭକ୍ତିସାଧନର ଯୋଗ୍ୟତା ଲାଭ ହେବ ନାହିଁ । ଏହି ମାୟିକ ଗୁଣ ଆମ ହୃଦୟରେ ଥିବା ପର୍ଯ୍ୟନ୍ତ ଆମେ ନିଜ ସୁଖ ସାଧନ ଉଦ୍ଦେଶ୍ୟରେ ସମସ୍ତପ୍ରକାର ଚେଷ୍ଟା କରୁଥିବୁ । ଏହି ଚେଷ୍ଟା କେତେବେଳେ ଫଳବତୀ ହୋଇଥାଏ ଓ ପୁଣି କେତେବେଳେ ଫଳବତୀ ନ ହୋଇ ଆମକୁ ଘୋର ଦୁଃଖସମୁଦ୍ରରେ ନିମଜ୍ଜିତ କରି ରଖେ । ଏହିପରି ଦୁଃଖଜର୍ଜରିତ ହୋଇ ଆମେ ଅନାଦିକାଳରୁ ଏ ସଂସାରରେ ଭ୍ରମଣ କରୁଛୁ । ଏତେ ଦୁଃଖ ଭୋଗ କରୁଥିଲେ ମଧ୍ୟ ଶ୍ରୀଭଗବାନଙ୍କ ଆରାଧନା ପ୍ରତି ଆମର ମନ ଯାଉ ନାହିଁ କି ଯିବ ନାହିଁ କାରଣ ରଜସ୍ତମୋଗୁଣ ଏହା କରାଇ ଦେବ ନାହିଁ ।

## ରଜସ୍ତମୋଗୁଣରୁ ମୁକ୍ତ ହେବାର ଉପାୟ

**ସୁବଳ**–ଏ ରଜସ୍ତମୋଗୁଣରୁ ମୁକ୍ତ ହେବାର ଉପାୟ କଅଣ ?

**ବାବାଜୀ ମହାରାଜ**–ଶ୍ରୀକୃଷ୍ଣ ଶ୍ରୀମଦ୍ଭାଗବତରେ ଏହି ବିଷୟରେ ଶ୍ରୀଉଦ୍ଧବଙ୍କୁ କହିଛନ୍ତି । ସେ ଜୀବର ଅଧିକାରକୁ ଲକ୍ଷ୍ୟ କରି ତିନି ପ୍ରକାର ସାଧନର ବ୍ୟବସ୍ଥା କରିଛନ୍ତି; କର୍ମଯୋଗ, ଜ୍ଞାନଯୋଗ ଓ ଭକ୍ତିଯୋଗ । ବେଦରେ କେବଳ କର୍ମକାଣ୍ଡର ଉପଦେଶ ଥିବା

ସମ୍ବନ୍ଧେ ଶ୍ରୀକୃଷ୍ଣ ଏଠାରେ କର୍ମଯୋଗ କଥା ଉପଦେଶ ଦେଲେ କାହିଁକି ? ଏହାର ଉତ୍ତରରେ କୁହାଯିବ ଯେ, ରଜସ୍ତମୋଗୁଣାକ୍ରାନ୍ତ ଜୀବ ସର୍ବଦା ସ୍ୱସୁଖଚିନ୍ତାରେ ହିଁ ମଗ୍ନ । ତେଣୁ ବେଦ ନିଜ ସୁଖ ଉଦ୍ଦେଶ୍ୟରେ କର୍ମକାଣ୍ଡ କରିବାକୁ ଉପଦେଶ ଦେଲେ । ତା ଦେଇ ନ ଥିଲେ ସ୍ୱସୁଖକାମୀ ଜୀବ ବେଦର ଉପଦେଶ କେବେହେଲେ ମାନି ନ ଥାନ୍ତା । ଅବଶ୍ୟ ସେହି କର୍ମକାଣ୍ଡ ମଧ୍ୟରେ ସର୍ବତ୍ର ଶ୍ରୀବିଷ୍ଣୁସ୍ମୃତିର ହିଁ ମହିମା ବର୍ଣ୍ଣିତ ହୋଇଛି । ଯେ ବୁଦ୍ଧିମାନ୍ ସେ ବୁଝିପାରିବ ଯେ, ବିଷ୍ଣୁସ୍ମୃତି ହିଁ ଯେତେବେଳେ ଶାସ୍ତ୍ରର ପ୍ରତିପାଦ୍ୟ ବିଷୟ, ମୁଁ ସର୍ବଦା ବିଷ୍ଣୁସ୍ମୃତି ନ କରି କାହିଁକି ଏହି କର୍ମକାଣ୍ଡ ପଛରେ ଗୋଡ଼ାଇବି ? ଏହିପରି ଭାବରେ ସେ କ୍ରମଶଃ ବିଷ୍ଣୁସ୍ମୃତିକୁ ସର୍ବଦା ହୃଦୟରେ ଜାଗ୍ରତ ରଖିବାକୁ ଚେଷ୍ଟା କରିବ । କିନ୍ତୁ ରଜସ୍ତମୋଗୁଣ ଚିତ୍ତକୁ ସର୍ବଦା ଲୟ ଅର୍ଥାତ୍ ନିଦ୍ରାଯୁକ୍ତ ଓ ବିକ୍ଷେପ ଅର୍ଥାତ୍ ଅନ୍ୟଚିନ୍ତାଯୁକ୍ତ କରାଇ ବିଷ୍ଣୁସ୍ମୃତିକୁ ହୃଦୟରେ ସ୍ଥାନ ଦେବାରେ ପ୍ରବଳ ବାଧା ସୃଷ୍ଟି କରିଥାଏ । ଭଗବଦିଚ୍ଛାରେ ଯେ ସାଧୁସଙ୍ଗ ପାଇବ ସେ ତାଙ୍କ ଉପଦେଶ ଶୁଣି ଭକ୍ତିଯୋଗର ଆଶ୍ରୟପୂର୍ବକ ହୃଦୟରେ ସର୍ବଦା ବିଷ୍ଣୁସ୍ମୃତି ଉଦ୍ରେକ କରାଇବା ପାଇଁ ଯତ୍ନବାନ୍ ହେବ । ସର୍ବଦା ହୃଦୟରେ ଏହି ବିଷ୍ଣୁସ୍ମୃତିକୁ ଜାଗ୍ରତ ରଖିବା ହିଁ ସାଧନର ମୂଳ ମନ୍ତ୍ର ଏବଂ ଏହା ହିଁ ଜୀବକୁ ରଜସ୍ତମୋଗୁଣରୁ ମୁକ୍ତ କରାଇବାର ସର୍ବୋତ୍ତମ ପନ୍ଥା ।

## ସାଧନର କ୍ରମ

**ସୁବଳ**—କର୍ମକାଣ୍ଡ ଓ କର୍ମଯୋଗ ମଧ୍ୟରେ ତଫାତ୍ କଅଣ ?

**ବାବାଜୀ ମହାରାଜ**—ତଫାତ୍ ତ ଆକାଶ ପାତାଳ । ସଂସାରୀ ଜୀବମାତ୍ରେ ସମସ୍ତେ ରଜସ୍ତମୋଗୁଣାକ୍ରାନ୍ତ । ତେଣୁ ନିଜ ସୁଖ ସାଧନ ଉଦ୍ଦେଶ୍ୟରେ କର୍ମକାଣ୍ଡରେ ପ୍ରବୃତ୍ତ ହେବା ସେମାନଙ୍କ ପକ୍ଷରେ ସ୍ୱାଭାବିକ । ଶୁଦ୍ଧଭାବରେ କର୍ମକାଣ୍ଡ କଲେ ଏବଂ ତହିଁରେ ବ୍ୟବସ୍ଥିତ ବିଷ୍ଣୁସ୍ମୃତିକୁ ହୃଦୟରେ ସ୍ଥାନ ଦେଲେ କ୍ରମଶଃ କର୍ମଫଳଭୋଗ ପ୍ରତି ବିତୃଷ୍ଣା ଆସେ । ସେତେବେଳେ ଜୀବ ନିଷ୍କାମଭାବରେ କେବଳ କର୍ତ୍ତବ୍ୟବୋଧରେ କର୍ମ କରେ । ବେଦବିହିତ କର୍ମ କଲେ ପୁଣ୍ୟଲାଭ ଅବଶ୍ୟ ହେବ । କିନ୍ତୁ କର୍ମଫଳଭୋଗ ପ୍ରତି ବିତୃଷ୍ଣା ଆସିଥିବା ବ୍ୟକ୍ତିର ପୁଣ୍ୟଲାଭର କାମନା ନ ଥିବାରୁ ସେ ସ୍ୱର୍ଗକୁ ଯାଏ ନାହିଁ ଏବଂ ବେଦନିଷିଦ୍ଧ ପାପ କରୁ ନ ଥିବାରୁ ନରକକୁ ମଧ୍ୟ ଯାଏ ନାହିଁ । ଏହିପରି ନିଷ୍କାମଭାବରେ କର୍ମ କରୁ କରୁ ସେ ଶୁଦ୍ଧଚିତ୍ତ ହୋଇ ଜ୍ଞାନାଧିକାର ପ୍ରାପ୍ତ ହୁଏ ଏବଂ କ୍ରମଶଃ ସାଯୁଜ୍ୟ ମୁକ୍ତି ପାଏ । କିନ୍ତୁ ନିଷ୍କାମଭାବରେ ଶୁଦ୍ଧଚିତ୍ତ ହୋଇ କର୍ମ କରୁ କରୁ ଯଦି ଦୈବକ୍ରମେ କୌଣସି ଭକ୍ତମହତଙ୍କ ସଙ୍ଗେ ତା'ର ଯୋଗାଯୋଗ ହୋଇଯାଏ, ତେବେ ସେ ଯେଉଁ କର୍ମ ନିଷ୍କାମଭାବରେ କରୁଥାଏ ତାହାକୁ ଭଗବାନଙ୍କ ପ୍ରୀତି ଉଦ୍ଦେଶ୍ୟରେ କରେ । ଏହାକୁ ଭକ୍ତିମାତ୍ରକାମ କର୍ମାର୍ପଣ କୁହାଯାଏ । ଏହା ହିଁ ଭକ୍ତିର ପୂର୍ବାଙ୍ଗ । ଏହାପରେ କ୍ରମଶଃ ସେ ଜାତରତି ହୋଇ ଶୁଦ୍ଧଭକ୍ତି କରି ପାରିବ । ଏହା ହେଲା ସାଧନର କ୍ରମ । ଏହି କ୍ରମ କଥା ଶ୍ରୀମଦ୍ଭାଗବତରେ ବର୍ଣ୍ଣିତ ହୋଇଛି ।

ସୁତରାଂ ଯେଉଁମାନଙ୍କ ପ୍ରତି ଯାଦୃଚ୍ଛିକ ମହତ୍‌କୃପା ଅଛି କେବଳ ସେହିମାନେ ହିଁ ଭକ୍ତିଯୋଗର ଅଧିକାରୀ । ଅର୍ଥାତ୍ ସେମାନଙ୍କୁ ଶୁଦ୍ଧଭକ୍ତିର ଉପଦେଶ ଦେଲେ, ସେମାନେ ତାହା ଠିକ୍ ଠିକ୍ ଗ୍ରହଣ କରିବେ ଏବଂ ତଦନୁଯାୟୀ ସାଧନରେ ପ୍ରବୃତ୍ତ ହେବେ । ଅନ୍ୟ କେହି ଏହା ଗ୍ରହଣ କରିପାରିବେ ନାହିଁ, ଯଦିବା କରନ୍ତି ତେବେ ବିକୃତଭାବରେ ହିଁ କରିବେ ।

**ସୁବଳ**—ମୁଁ ଯାହା ଜାଣିଛି ଏହି କଳିଯୁଗରେ ଶ୍ରୀଚୈତନ୍ୟ ମହାପ୍ରଭୁ ସାଢ଼େ ପାଞ୍ଚଶହ ବର୍ଷ ପୂର୍ବେ ଆବିର୍ଭୂତ ହୋଇ ଶ୍ରୀହରିନାମକୀର୍ତ୍ତନରୂପକ ଭକ୍ତି ବିଷୟରେ ନିଜେ ଆଚରଣ କରି ଜଗଦ୍‌ବାସୀଙ୍କୁ ଶିକ୍ଷା ଦେଇଗଲେ । ସେହି ଶିକ୍ଷାନୁଯାୟୀ ଆଜିକାଲି ବହୁସ୍ଥାନରେ ଲୋକେ ହରିନାମ କୀର୍ତ୍ତନର ଆଶ୍ରୟ ନେଉଛନ୍ତି । କିନ୍ତୁ ସେମାନଙ୍କଠାରେ ତ ସାଧୁର ଲକ୍ଷଣସବୁ ଦେଖା ଯାଉ ନାହିଁ । ଅଧିକାଂଶ ପ୍ରାୟ ବ୍ୟବସାୟିକଭିତ୍ତିରେ ଏହା କରୁଛନ୍ତି । ଏହାର କାରଣ କ'ଣ?

**ବାବାଜୀ ମହାରାଜ**—ବାଃ, ଭଲ କଥା ପଚାରିଛ । ହରିନାମ କୀର୍ତ୍ତନ ହେଲା ଭକ୍ତି । ଶ୍ରୀଚୈତନ୍ୟ ମହାପ୍ରଭୁ ତ ସ୍ୱୟଂ ଭଗବାନ୍ । ତେଣୁ ତାଙ୍କ ଶିକ୍ଷାରେ କୌଣସି ତ୍ରୁଟି ରହିବା ସମ୍ଭବ ନୁହେଁ । ତାଙ୍କ ଶିକ୍ଷା ବିଷୟରେ ତାଙ୍କ ଅନୁଗତ ଗୋସ୍ୱାମିମାନେ ବହୁ ଗ୍ରନ୍ଥ ରଚନା କରି ପ୍ରାଞ୍ଜଳଭାବରେ ବୁଝାଇ ଦେଇ ଯାଇଛନ୍ତି । ଏହା ପୂର୍ବରୁ ତୁମକୁ କହିଛି । ସେହିମାନଙ୍କ ଶିକ୍ଷାକୁ ଅନୁସରଣ କଲେ ଭକ୍ତିସାଧନ ସମ୍ବନ୍ଧରେ ଠିକ୍ ଠିକ୍ ଜ୍ଞାନ ଲାଭ ହୋଇପାରିବ । ଶ୍ରୀଲ ରୂପଗୋସ୍ୱାମୀ ପ୍ରଭୁଙ୍କ ଶ୍ରୀଭକ୍ତିରସାମୃତସିନ୍ଧୁ, ଶ୍ରୀଲ ସନାତନ ଗୋସ୍ୱାମୀ ପ୍ରଭୁଙ୍କ ଶ୍ରୀବୃହଭାଗବତାମୃତ ଓ ଶ୍ରୀଲ ଜୀବଗୋସ୍ୱାମୀ ପ୍ରଭୁଙ୍କ ଷଟ୍‌ସନ୍ଦର୍ଭ ଆଲୋଚନା କଲେ ଭକ୍ତି ସମ୍ବନ୍ଧରେ ସମ୍ୟକ୍ ଜ୍ଞାନ ଲାଭ ହୋଇପାରିବ । ଶୁଦ୍ଧଭକ୍ତିର ସ୍ୱରୂପ ସମ୍ବନ୍ଧରେ ଉକ୍ତ ଗ୍ରନ୍ଥମାନଙ୍କରେ ପ୍ରାଞ୍ଜଳଭାବରେ ବର୍ଣ୍ଣିତ ହୋଇଛି । ସେହିସବୁ ଗ୍ରନ୍ଥର ଶିକ୍ଷାକୁ ଆଧାର କରି ଶୁଦ୍ଧଭକ୍ତି ବିଷୟ ତୁମକୁ କହୁଛି ।

ବର୍ତ୍ତମାନ ଭକ୍ତି ଓ ଭକ୍ତିଯୋଗ ବିଷୟ କହୁଛି ଶୁଣ ।

''ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନମ୍ ।
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନମ୍ ।।
ଇତି ପୁଂସାର୍ପିତା ବିଷ୍ଣୌ ଭକ୍ତିଶ୍ଚେନ୍ନବଲକ୍ଷଣା ।
କ୍ରିୟେତ ଭଗବତ୍ୟଦ୍ଧା ତନ୍ମନ୍ୟେଽଧୀତମୁତ୍ତମମ୍ ।।''

(ଶ୍ରୀଭା: ୭।୫।୨୩-୨୪)

ଅର୍ଥାତ୍ ଶ୍ରୀବିଷ୍ଣୁଙ୍କ ନାମ ଶ୍ରବଣ, କୀର୍ତ୍ତନ, ସ୍ମରଣ, ପାଦସେବନ, ଅର୍ଚ୍ଚନ, ବନ୍ଦନ, ଦାସ୍ୟ, ସଖ୍ୟ ଓ ଆତ୍ମନିବେଦନ—ଏହି ନଅପ୍ରକାର ଶ୍ରୀବିଷ୍ଣୁବିଷୟକ ଅନୁଷ୍ଠାନ ହେଲା ଭକ୍ତି । କିନ୍ତୁ ଏହା ଶ୍ରୀକୃଷ୍ଣଙ୍କ କଥିତ ଭକ୍ତିଯୋଗ ନୁହେଁ । ଉପର୍ଯୁକ୍ତ ଶ୍ଲୋକର ଦ୍ୱିତୀୟ ପାଦରେ ଯେଉଁ ''ଇତି ପୁଂସାର୍ପିତା ବିଷ୍ଣୌ'' କଥା ଅଛି, ତହିଁରୁ ହିଁ ଭକ୍ତିଯୋଗର କଥା ଆସୁଛି ।

## ଭକ୍ତି ଓ ଭକ୍ତିଯୋଗ ମଧ୍ୟରେ ପାର୍ଥକ୍ୟ

**ସୁବଳ**—ଭକ୍ତି ଓ ଭକ୍ତିଯୋଗ ମଧ୍ୟରେ ପାର୍ଥକ୍ୟ କଅଣ ?

**ବାବାଜୀ ମହାରାଜ**—ପୂର୍ବବର୍ତ୍ତୀ ଶ୍ଳୋକର ପ୍ରଥମ ପାଦରେ ଯେଉଁ ନଅଟି ଭକ୍ତ୍ୟଙ୍ଗ କଥା କୁହାଗଲା, ତାହା ହେଲା ଭକ୍ତି । ପରବର୍ତ୍ତୀ ଶ୍ଳୋକରେ ଯେଉଁ 'ଇତି ପୁଂସାର୍ପିତା ବିଷ୍ଣୌ' କଥା କୁହାଯାଇଛି, ତାହାର ଟୀକାରେ ଶ୍ରୀଲ ଜୀବଗୋସ୍ୱାମୀ ପ୍ରଭୁ କହିଛନ୍ତି, 'ତଦର୍ଥମ୍ ଏବେଦମ୍ ଇତି ଭାବିତା' । ଅର୍ଥାତ୍ ଶ୍ରବଣ-କୀର୍ତ୍ତନାଦି ଏହି ନଅପ୍ରକାର ଅନୁଷ୍ଠାନ ଶ୍ରୀବିଷ୍ଣୁଙ୍କର ସୁଖକର କାର୍ଯ୍ୟ ଓ ଏହି ପ୍ରକାର ଅନୁଷ୍ଠାନ କଲେ ସେ ସୁଖୀ ହେବେ । ପ୍ରଥମେ ମନରେ ଏହିପ୍ରକାର ଚିନ୍ତା କରି ପରେ ଶ୍ରୀବିଷ୍ଣୁଙ୍କ ସୁଖ ପାଇଁ ଏହାର ଯେଉଁ ଅନୁଷ୍ଠାନ, ତାହା ହିଁ ଭକ୍ତିଯୋଗପଦବାଚ୍ୟ । ଏହି ଭକ୍ତିଯୋଗ କଥା ହିଁ ଶ୍ରୀକୃଷ୍ଣ ଶ୍ରୀଉଦ୍ଧବଙ୍କୁ କହିଛନ୍ତି । ଏହା କେବଳ ଶ୍ରୀବିଷ୍ଣୁଙ୍କ ସୁଖ ପାଇଁ କରାହେଉଛି । ଏଥିରେ ସାଧକର ସାମାନ୍ୟତମ ସ୍ୱାର୍ଥ ନାହିଁ । ଅର୍ଥାତ୍ ଶ୍ରୀବିଷ୍ଣୁଙ୍କ ଉଦ୍ଦେଶ୍ୟରେ ନିଜ ସ୍ୱାର୍ଥକୁ ସମ୍ପୂର୍ଣ୍ଣରୂପେ ଜଳାଞ୍ଜଳି ଦେଇ ଏହା ଅନୁଷ୍ଠିତ ହେଉଛି । ବର୍ତ୍ତମାନ ପ୍ରଶ୍ନ ହେଉଛି ଯେ, ଏହା ଶ୍ରୀବିଷ୍ଣୁଙ୍କ ସୁଖ ପାଇଁ କାହିଁକି କରାଯିବ ? ଏହାର ଉତ୍ତରରେ କୁହାଯିବ ଯେ, ଆମେ ଅନାଦିକାଳରୁ ଶ୍ରୀଭଗବାନଙ୍କୁ ଭୁଲି ମାୟାବଦ୍ଧ ହୋଇଛୁ । ଯାହାଙ୍କୁ ଭୁଲି ମାୟାବଦ୍ଧ ହୋଇଛୁ, ସେହି ବିଷ୍ଣୁଙ୍କୁ ସ୍ମରଣ କଲେ ମାୟାବନ୍ଧନରୁ ମୁକ୍ତ ହେବୁ । ଏହି ସ୍ମରଣର ତିନିପ୍ରକାର ଭେଦ ଅଛି ବୋଲି ଶ୍ରୀଜୀବପ୍ରଭୁ ଶ୍ରୀଭକ୍ତିସନ୍ଦର୍ଭରେ ଉଲ୍ଲେଖ କରିଛନ୍ତି; ଯଥା—ସକାମ, ନୈଷ୍କର୍ମ୍ୟକାମ ଓ ଭକ୍ତିମାତ୍ରକାମ ।

ଭଗବଦ୍‌ବିମୁଖ ଜୀବମାତ୍ରେ ସମସ୍ତେ ରଜସ୍ତମୋଗୁଣାବିଷ୍ଟ । ରଜୋଗୁଣ ସେମାନଙ୍କୁ ସର୍ବଦା ନିଜସୁଖକାମନାରେ ଜର୍ଜରିତ କରି ରଖିଛି । ତେଣୁ ସେମାନେ ଭକ୍ତି କଲେ ମଧ୍ୟ ନିଜ ସ୍ୱାର୍ଥସିଦ୍ଧି ପାଇଁ ପ୍ରାର୍ଥନା କରିବେ ହିଁ କରିବେ । ଏହା ଭକ୍ତି, କିନ୍ତୁ ଭକ୍ତିଯୋଗ ନୁହେଁ । ଏହାର ଫଳ କେବଳ ପୁଣ୍ୟଲାଭ । ଅବଶ୍ୟ ଶ୍ରୀଧ୍ରୁବଙ୍କ ପରି ଜଣେ ଯଦି ଅନ୍ୟ ଦେବଦେବୀଙ୍କ ଉପାସନା ନ କରି କେବଳ ଶ୍ରୀବିଷ୍ଣୁଙ୍କ ଉପାସନା କରିବ ଏବଂ ତୀବ୍ର ଆର୍ତ୍ତିଯୁକ୍ତ ହୋଇ ତାଙ୍କ ନିକଟରେ ସାଂସାରିକ ସୁଖ କାମନା କରିବ, ଶ୍ରୀବିଷ୍ଣୁ ତାର କାମନା ସର୍ବତୋଭାବରେ ପୂର୍ଣ୍ଣ କରିବା ସଙ୍ଗେ ସଙ୍ଗେ ତାକୁ ବୈକୁଣ୍ଠର ସୁଖୈଶ୍ୱର୍ଯ୍ୟୋତ୍ତରା ମୁକ୍ତି ମଧ୍ୟ ଦେବେ । ଏହା ହିଁ ଏକନିଷ୍ଠଭାବରେ କେବଳ ଶ୍ରୀବିଷ୍ଣୁଙ୍କ ଉପାସନା କରିବାର ଅମୃତମୟ ଫଳ ।

ଆଉ କେହି କେହି ସଂସାରରୁ ମୁକ୍ତିକାମନା କରି ଭକ୍ତି କରିଥାନ୍ତି । ଏହାକୁ ନୈଷ୍କର୍ମ୍ୟକାମ ଭକ୍ତି କୁହାଯାଏ । ଏହା ମଧ୍ୟ ଭକ୍ତିଯୋଗ ନୁହେଁ । କାରଣ ଏଥିରେ ସାଧକର ମୁକ୍ତିରୂପକ ସ୍ୱସ୍ୱାର୍ଥସିଦ୍ଧି ବାଞ୍ଛା ଅଛି, ଭଗବାନଙ୍କ ଅହୈତୁକ ସୁଖବାଞ୍ଛା ନାହିଁ । ଦୃଢ଼ ନିଷ୍ଠାଯୁକ୍ତ ହୋଇ ଶ୍ରୀବିଷ୍ଣୁଙ୍କୁ ଏହିପ୍ରକାର ଭକ୍ତି କଲେ ସେ ମୁକ୍ତି ଦିଅନ୍ତି ।

ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ପ୍ରଚାରିତ ଶ୍ରୀହରିନାମକୀର୍ତ୍ତନର ଆଶ୍ରୟ ନେଲେ ମଧ୍ୟ ଜଗତର ଅଧିକାଂଶ ଲୋକଙ୍କର ଭକ୍ତି ପ୍ରାୟ ସକାମା ହିଁ ହୋଇଥାଏ । ନୈଷ୍କର୍ମ୍ୟକାମ ସାଧକଙ୍କ ସଂଖ୍ୟା ଖୁବ୍ ନଗଣ୍ୟ ଆଉ ଭକ୍ତିମାତ୍ରକାମ ସାଧକଙ୍କ ସଂଖ୍ୟା ବିରଳ ।

ଶ୍ରୀବିଷ୍ଣୁଙ୍କ ପ୍ରୀତି ଉଦ୍ଦେଶ୍ୟରେ ଯେଉଁ ନାମକୀର୍ତ୍ତନ କରାଯାଏ, ତହିଁରେ ସାଧକର ଅନ୍ୟ କୌଣସି ପ୍ରକାର ସ୍ୱାର୍ଥସିଦ୍ଧି କାମନା ନ ଥାଏ । ଏହିପ୍ରକାର ସାଧକକୁ ହିଁ ଭକ୍ତିମାତ୍ରକାମ ସାଧକ କୁହାଯାଏ ଏବଂ ତାହାର ଭକ୍ତିକୁ ଭକ୍ତିମାତ୍ରକାମ ଭକ୍ତି କୁହାଯାଏ । ଏହିପ୍ରକାର ଭକ୍ତି ହିଁ ସର୍ବୋତ୍ତମ ।

**ସୁବଳ**—ଶ୍ରୀବିଷ୍ଣୁଙ୍କ ପ୍ରୀତି ଉଦ୍ଦେଶ୍ୟରେ ହରିନାମ କୀର୍ତ୍ତନ କରିବା ଯଦି ସର୍ବଶ୍ରେଷ୍ଠ ହୋଇଥାଏ, ତେବେ ସମସ୍ତେ ଏହିପ୍ରକାର ହରିନାମ କୀର୍ତ୍ତନ କରୁ ନାହାନ୍ତି କାହିଁକି ?

**ବାବାଜୀ ମହାରାଜ**—ତୁମକୁ କହିଲି ଯେ, ଭଗବାନଙ୍କୁ ଭୁଲି ପ୍ରତ୍ୟେକ ଜୀବ ରଜସ୍ତମୋଗୁଣଦ୍ୱାରା ଚାଳିତ ହୋଇ ନିଜ ସ୍ୱାର୍ଥସିଦ୍ଧି ପାଇଁ ସର୍ବଦା ବ୍ୟାକୁଳ । ତେଣୁ ସେମାନଙ୍କ ହୃଦୟସ୍ଥ ରଜସ୍ତମୋଗୁଣ କେବେହେଲେ ସେମାନଙ୍କ ହୃଦୟରେ ଭଗବାନଙ୍କ ସୁଖଚିନ୍ତା ଜାଗ୍ରତ କରାଇବ ନାହିଁ ।

**ସୁବଳ**—ତାହାହେଲେ ଏହି ଅସମ୍ଭବ କଥା କାହିଁକି ଶାସ୍ତ୍ରରେ କୁହାଗଲା ?

**ବାବାଜୀ ମହାରାଜ**—ଶାସ୍ତ୍ରକଥା ତ କେବେହେଲେ ଭୁଲ ହେବ ନାହିଁ । ତେବେ ତାହାର ଗୋଟିଏ ଧାରା ଅଛି । ତାହା ହେଉଛି ଏହି ଯେ, ଯାହା ପ୍ରତି ପୂର୍ବ ସାଧୁଙ୍କ କୃପା ହୋଇଥିବ, କେବଳ ସେହି ବ୍ୟକ୍ତି ହିଁ ଶ୍ରୀଭଗବାନଙ୍କ ସୁଖ ଉଦ୍ଦେଶ୍ୟରେ ଭକ୍ତି କରିପାରିବ । ଅନ୍ୟ କେହି କରି ପାରିବେ ନାହିଁ । ସେହିପରି ବ୍ୟକ୍ତିମାନେ ହିଁ ଭକ୍ତିସାଧନ ପାଇଁ ଯୋଗ୍ୟ । ତେଣୁ କେବଳ ସେହିମାନଙ୍କ ଉଦ୍ଦେଶ୍ୟରେ ହିଁ ଶାସ୍ତ୍ରରେ ଭକ୍ତିସାଧନର ଉପଦେଶ ଦିଆ ହୋଇଛି ।

**ସୁବଳ**—ଯେଉଁମାନଙ୍କ ପ୍ରତି ପୂର୍ବ ମହତ୍‌କୃପା ନାହିଁ ସେମାନେ କଅଣ କେବେହେଲେ ଶୁଦ୍ଧଭକ୍ତିର ଅଧିକାରୀ ହୋଇପାରିବେ ନାହିଁ ?

**ବାବାଜୀ ମହାରାଜ**—ନା, ସେମାନେ କେବେହେଲେ ଶୁଦ୍ଧଭକ୍ତି ସାଧନର ଯୋଗ୍ୟ ହୋଇପାରିବେ ନାହିଁ । ସେମାନେ କେବଳ ସକାମା ବା ନୈଷ୍କର୍ମ୍ୟକାମା ଭକ୍ତି ପର୍ଯ୍ୟନ୍ତ କରି ପାରିବେ । ସଂସାର ଭ୍ରମଣ କରୁ କରୁ ଦୈବକ୍ରମେ କୌଣସି ଭକ୍ତମହତଙ୍କ ସଙ୍ଗ ମିଳିଗଲେ ତାଙ୍କଠାରୁ ଶାସ୍ତ୍ରକଥା ଶୁଣି ତହିଁରେ ଯେଉଁ ଶ୍ରଦ୍ଧା ଜାତ ହୋଇଥାଏ, ତାହା ହିଁ ଜୀବର ଭକ୍ତ୍ୟଧିକାରଲାଭର ଏକମାତ୍ର କାରଣ । ଏହା ଅନ୍ୟ କୌଣସି ସାଧନସାପେକ୍ଷ ନୁହେଁ । "ଯଦୃଚ୍ଛୟା ମତ୍‌କଥାଦୌ ଜାତଶ୍ରଦ୍ଧସ୍ତୁ ଯଃ ପୁମାନ୍....।" (ଶ୍ରୀଭା: ୧୧।୨୦।୮) ଶ୍ଳୋକରେ ଶ୍ରୀକୃଷ୍ଣ ଶ୍ରୀଉଦ୍ଧବଙ୍କୁ ଏହା କହିଛନ୍ତି । 'ଯଦୃଚ୍ଛୟା' ଶବ୍ଦର ଟୀକାରେ ଶ୍ରୀଳ ଜୀବପାଦ ଉଲ୍ଲେଖ କରିଛନ୍ତି—"କେନାପି ପରମସ୍ୱତନ୍ତ୍ର ଭଗବଦ୍‌ଭକ୍ତସଙ୍ଗ-ତତ୍‌କୃପାଜାତମଙ୍ଗଳୋଦୟେନ" ଅର୍ଥାତ୍ କୌଣସି ପରମସ୍ୱତନ୍ତ୍ର ଭଗବଦ୍‌ଭକ୍ତଙ୍କ ସଙ୍ଗ ଓ ତାଙ୍କ କୃପାହେତୁ ଜାତ ମଙ୍ଗଳୋଦୟଦ୍ୱାରା ।

**ସୁବଳ**—ଯଦି ସାଧୁଙ୍କ କୃପା ହେଲେ ଭକ୍ତି କରିବାର ଅଧିକାର ମିଳିବ, ତେବେ ତହିଁରେ ଜୀବର ଚେଷ୍ଟା କରିବାର ଆବଶ୍ୟକତା କଅଣ ଅଛି ?

**ବାବାଜୀ ମହାରାଜ**—ଯାହା ପ୍ରତି ପୂର୍ବଜନ୍ମରେ ସାଧୁଙ୍କ ଆକସ୍ମିକ କୃପା ନାହିଁ, ତା' ହୃଦୟରେ ଭକ୍ତି କରିବାର ବାସନା ଜାଗିବ ନାହିଁ କିଂବା ତାକୁ କେହି ଭକ୍ତି କରିବାକୁ ଉପଦେଶ

ଦେଲେ ମଧ୍ୟ ସେ ତାହା ଠିକ୍‌ଭାବରେ ଗ୍ରହଣ ନ କରି ନିଜ ସ୍ୱାର୍ଥସିଦ୍ଧି ଉଦ୍ଦେଶ୍ୟରେ ବିକୃତଭାବରେ ହିଁ କରିବ । ସେହି କାରଣରୁ ଶୁଦ୍ଧଭକ୍ତି ସର୍ବସାଧାରଣରେ ପ୍ରଚାର୍ଯ୍ୟ ନୁହେଁ ବୋଲି କୁହାଯାଇଛି । ଯାହା ପ୍ରତି ପୂର୍ବ ଯାଦୃଚ୍ଛିକ ମହଦ୍‌କୃପା ହୋଇଥିବ, ସେ ହେଲା ଭାଗ୍ୟବାନ୍ ଏବଂ ତାହାର ପୁଣି ଏହି ଜନ୍ମରେ କଅଣ ଗୋଟିଏ ଭଲ ବାଟରେ ଯିବା ପାଇଁ ବାସନା ଜାଗିବ ହିଁ ଜାଗିବ । ଏହି ସମୟରେ ଭଗବାନଙ୍କ ଇଚ୍ଛାରୁ ତାହାକୁ ପୁନର୍ବାର ସାଧୁସଙ୍ଗ ମିଳିବ । ସେହି ସାଧୁ ତାହାକୁ ନିଜ ସ୍ୱାର୍ଥସିଦ୍ଧି ପରିବର୍ତ୍ତେ କେବଳ ଭଗବାନଙ୍କ ସୁଖ ପାଇଁ ତାହାଙ୍କ ନାମକୀର୍ତ୍ତନାଦି ଭକ୍ତି କରିବାକୁ ଯେଉଁ ଉପଦେଶ ଦେବେ, ତାହା ସେ ଗ୍ରହଣ କରି ତଦନୁଯାୟୀ ଆଚରଣରେ ଯତ୍ନବାନ୍ ହେବ । ସେହି ସାଧୁଙ୍କ ସଙ୍ଗରେ ରହି ତାଙ୍କ ଉପଦେଶ ପାଳନ କରି ସେ ଭଗବାନଙ୍କ ସୁଖ ଉଦ୍ଦେଶ୍ୟରେ ଭକ୍ତି କରିବାକୁ ପ୍ରବୃତ୍ତ ହେବ । କିନ୍ତୁ ତା' ହୃଦୟରେ ରଜସ୍ତମୋଗୁଣର ପ୍ରାବଲ୍ୟହେତୁ ସେ ଭଗବାନଙ୍କ ସୁଖ ଉଦ୍ଦେଶ୍ୟରେ ଭକ୍ତି କରୁଛି ବୋଲି ମନେ କଲେ ମଧ୍ୟ ତହିଁରେ ମୁଁ କରୁଛି ବୋଲି ରଜୋଗୁଣଜାତ ଅହଙ୍କାର ମିଶ୍ରିତ ଥାଏ । ତହିଁରେ ଭକ୍ତିର ଆକାର ଥିଲେ ମଧ୍ୟ ତାହା ସ୍ୱରୂପତଃ କର୍ମ । ତହିଁରେ ଭକ୍ତିତ୍ୱ ଆରୋପ କରାହେଉଥିବାରୁ ତାହାକୁ ଆରୋପସିଦ୍ଧା ଭକ୍ତି ବୋଲି ଶ୍ରୀଜୀବଗୋସ୍ୱାମୀ ପ୍ରଭୁ ଶ୍ରୀଭକ୍ତିସନ୍ଦର୍ଭରେ ଉଲ୍ଲେଖ କରିଛନ୍ତି । ତାହା ଶୁଦ୍ଧଭକ୍ତି ନ ହୋଇ କର୍ମମିଶ୍ରା ଭକ୍ତି ବା ଭକ୍ତିମାତ୍ରକାମ କର୍ମାର୍ପଣ ହୋଇଯାଏ ।

ସେ ସାଧୁସଙ୍ଗ ପାଇଥିଲେ ମଧ୍ୟ ସାଧୁଙ୍କ ସ୍ୱରୂପ ଠିକ୍ ଉପଲବ୍ଧି କରି ପାରି ନ ଥାଏ । ଏହି ଅବସ୍ଥାରେ ଯେ ସାଧୁଙ୍କ କୃପା ପାଇବା ପାଇଁ ବ୍ୟାକୁଳ ହୋଇ ଶ୍ରୀଭଗବାନଙ୍କ ଶ୍ରୀପାଦପଦ୍ମରେ ପ୍ରାର୍ଥନା ଜଣାଏ, ସେ ସାଧୁଙ୍କ ସ୍ୱରୂପ ଉପଲବ୍ଧି କରି ତାଙ୍କ କୃପାବରଣଯୋଗ୍ୟ ହୁଏ । ଅର୍ଥାତ୍ ଠିକ୍‌ରୂପେ ତାଙ୍କ ଉପଦେଶ ପାଳନରେ ବ୍ରତୀ ହୁଏ । **ସେହି କାରଣରୁ ସାଧୁସଙ୍ଗକୁ ହିଁ ଭଗବତ୍‌କୃପା ବୋଲି କୁହାଯାଇଛି ।** ଅର୍ଥାତ୍ ଯାହାର ସାଧୁସଙ୍ଗ ଲାଭ ହୋଇଛି, ତା' ପ୍ରତି ଭଗବାନଙ୍କ କୃପାଦୃଷ୍ଟି ପଡ଼ିଛି ବୋଲି ବୁଝିବାକୁ ହେବ । ହୃଦୟରେ କୃଷ୍ଣଭକ୍ତି ଜନ୍ମର ମୂଳ କାରଣ ହେଲା ଏହି ସାଧୁସଙ୍ଗ ।

## ଶୁଦ୍ଧଭକ୍ତି ସାଧନର ପ୍ରଥମ ସୋପାନ

ଭକ୍ତିକାମୀ ସାଧକକୁ ସର୍ବପ୍ରଥମେ ଏହି ସାଧୁସଙ୍ଗ ଲାଭ ପାଇଁ ଭଗବାନଙ୍କ ଶ୍ରୀପାଦପଦ୍ମରେ ସକ୍ରନ୍ଦନ ବ୍ୟାକୁଳ ପ୍ରାର୍ଥନା ଜଣାଇବାକୁ ହେବ । ଏହା ହିଁ ଶୁଦ୍ଧଭକ୍ତି ସାଧନର ପ୍ରଥମ ସୋପାନ । ଅବଶ୍ୟ ପୂର୍ବ ଯାଦୃଚ୍ଛିକ ମହଦ୍‌କୃପା ନ ଥିଲେ ସାଧକ ହୃଦୟରେ ଏହିପ୍ରକାର ବାସନା ଜାଗିବ ନାହିଁ କିଂବା ତାକୁ ଯଦି ଶୁଦ୍ଧଭକ୍ତିସାଧନର ଉପଦେଶ ଦିଆଯାଏ, ତେବେ ତାହା ସେ ଗ୍ରହଣ ମଧ୍ୟ କରି ପାରିବ ନାହିଁ । ଯଦି କରେ, ବିକୃତଭାବରେ ନିଜ ସ୍ୱାର୍ଥସିଦ୍ଧି ଉଦ୍ଦେଶ୍ୟରେ ହିଁ କରିବ ।

ଭଗବଦ୍‌ବିମୁଖ ଜୀବମାତ୍ରେ ସମସ୍ତେ କର୍ମାଧିକାରୀ । ଏହି ଅଧିକାରରେ ପ୍ରଥମେ ଏହିପ୍ରକାର ବ୍ୟାକୁଳ ପ୍ରାର୍ଥନା ବ୍ୟତୀତ ଆଉ କିଛି କୃତ୍ୟ ନାହିଁ । ଏହି ବ୍ୟାକୁଳ ପ୍ରାର୍ଥନାରେ

ଭଗବାନଙ୍କ ହୃଦୟ ବିଗଳିତ ହୋଇଯାଏ ଏବଂ ସେ ଉପଯୁକ୍ତ ସାଧୁଙ୍କ ସଙ୍ଗେ ଜୀବର ଯୋଗାଯୋଗ କରାଇ ଦିଅନ୍ତି । ସେହି ସାଧୁ ହେଲେ ତା'ର ଗୁରୁ ।

## ଶୁଦ୍ଧଭକ୍ତିସାଧନର ଦ୍ୱିତୀୟ ସୋପାନ

ଗୁରୁ ଯେତେବେଳେ ତାକୁ ଭଗବାନଙ୍କ ସୁଖ ଉଦ୍ଦେଶ୍ୟରେ ସମସ୍ତ ଅନୁଷ୍ଠାନ କରିବାକୁ ଉପଦେଶ ଦିଅନ୍ତି ଏବଂ ଭଗବାନ୍ ଅନ୍ତର୍ଯାମୀରୂପେ ସର୍ବଜୀବ ହୃଦୟରେ ଅବସ୍ଥାନ କରୁଛନ୍ତି, ଏହି ବିଚାରରେ ଆବ୍ରହ୍ମସ୍ତମ୍ଭ ପ୍ରତ୍ୟେକ ଜୀବକୁ ସମ୍ମାନ କରିବାକୁ କୁହନ୍ତି, ସେ ତତ୍‌କ୍ଷଣାତ୍ ତାହା ଗ୍ରହଣ କରିନିଏ ଏବଂ ତା'ର ସମସ୍ତ କାର୍ଯଦ୍ୱାରା ଭଗବାନଙ୍କ ସୁଖ କାମନା କରିବା ସଙ୍ଗେ ସଙ୍ଗେ ଅନ୍ତର୍ଯାମିଦୃଷ୍ଟିରେ ପ୍ରତ୍ୟେକ ଜୀବକୁ ସମ୍ମାନ ଦେବାକୁ ଅଭ୍ୟାସ କରେ ।

**ସୁବଳ**—ପ୍ରତ୍ୟେକ ଜୀବ ତ ସମାନ । ଜଣେ ଜଣକୁ ସମ୍ମାନ ଦେବାର ଆବଶ୍ୟକତା କଅଣ ଅଛି ?

**ବାବାଜୀ ମହାରାଜ**—ବେଦ କହିଲେ ଦେହରୂପକ ବୃକ୍ଷରେ ଦୁଇଟି ପକ୍ଷୀ ବାସ କରନ୍ତି । ଗୋଟିଏ ପକ୍ଷୀ ବୃକ୍ଷର ଫଳ ଖାଏ ଓ ଆଉ ଗୋଟିଏ ପକ୍ଷୀ କେବଳ ସାକ୍ଷୀରୂପେ ସବୁ ଦେଖେ ।

**ସୁବଳ**—ଏ ଦୁଇଟି ପକ୍ଷୀ କିଏ କିଏ ?

**ବାବାଜୀ ମହାରାଜ**—ଗୋଟିଏ ଜୀବାତ୍ମା ଓ ଆଉ ଗୋଟିଏ ପରମାତ୍ମା । ପରମାତ୍ମା ପ୍ରତ୍ୟେକ ଜୀବକୁ ସୃଷ୍ଟି କରି ତାଙ୍କ ଅଚିନ୍ତ୍ୟ ଶକ୍ତି ପ୍ରଭାବରେ ନିତ୍ୟକାଳ ଅନ୍ତର୍ଯାମୀରୂପେ ତା' ହୃଦୟରେ ରହିଛନ୍ତି ଏବଂ ତା କର୍ମଫଳାନୁଯାୟୀ ତାକୁ ଚାଳିତ କରୁଛନ୍ତି । ଜୀବ ଯେଉଁସବୁ କର୍ମ କରୁଛି, ତାର ଫଳ ତା' ଭୋଗ ପାଇଁ ସଞ୍ଚିତ ହୋଇ ରହୁଛି ଏବଂ ସେହି ଫଳ ଭୋଗ କରିବାକୁ ସେ ବିଭିନ୍ନ ଯୋନିରେ ପୁନଃ ପୁନଃ ଜନ୍ମଲାଭ କରୁଛି । ମନୁଷ୍ୟ ଜନ୍ମରେ ଯେଉଁ ପାପ କରୁଛି, ଇତର ଜନ୍ମ ଲାଭ କରି ତହିଁରୁ କିଛି ପାପର ଫଳ ଭୋଗ କରି ତାକୁ ଖଣ୍ଡନ କରୁଛି । ଏହିପରି ସଂସାର ଭ୍ରମଣ କରୁ କରୁ ସେ ପୁଣି ମନୁଷ୍ୟଜନ୍ମ ଲାଭ କରୁଛି । ଏହା ହେଲା ଜୀବର ସଂସାରଭ୍ରମଣ ।

ପରମାତ୍ମା ତାଙ୍କ ଅଚିନ୍ତ୍ୟଶକ୍ତିପ୍ରଭାବରେ ଜୀବ ହୃଦୟରେ ଅବସ୍ଥାନ କରୁଥିଲେ ମଧ୍ୟ ନିର୍ଲିପ୍ତଭାବେ ରହିଥାନ୍ତି ଓ ଜୀବ ଯେଉଁ କାର୍ଯ କରେ ସାକ୍ଷୀରୂପେ ତାର ଫଳଭୋଗର ବ୍ୟବସ୍ଥା କରିଥାନ୍ତି । ଏହିପରି ଭାବରେ ସେ ପ୍ରତ୍ୟେକ ଜୀବର ଇଚ୍ଛାଶକ୍ତି ଓ କ୍ରିୟାଶକ୍ତିର ଚାଳକ ହୋଇ ତା' ହୃଦୟରେ ଅବସ୍ଥାନ କରୁଛନ୍ତି । ଜୀବ ଭଲ ବା ମନ୍ଦ ଯେଉଁ କାର୍ଯ କରୁଛି, ତାହା ତାଙ୍କ ଦ୍ୱାରା ଚାଳିତ ହୋଇ ହିଁ କରୁଛି । ଗୋଟିଏ ଜୀବ ଅନ୍ୟ ଜୀବର ଉପକାର କି ଅପକାର ଯାହା କରୁଛି, ତାହା ସମ୍ପୂର୍ଣ୍ଣରୂପେ ତାଙ୍କରି ପ୍ରେରଣାରେ ହିଁ କରୁଛି । ତେଣୁ ଉକ୍ତ ଜୀବର ଏଥିରେ

ଗୁଣ କି ଦୋଷ ଥିଲା ପରି ଜଣାଗଲେ ମଧ୍ୟ ବସ୍ତୁତଃ ଏଥିରେ ତାହାର ଦୋଷ କି ଗୁଣ କିଛି ନାହିଁ । ସେ ସମ୍ପୂର୍ଣ୍ଣରୂପେ ପରମାତ୍ମାଙ୍କ ଦ୍ୱାରା ହିଁ ଚାଳିତ ହୋଇ ଏହା କରୁଛି । ତେଣୁ କାହାରି ଦୋଷ ଦେଖିବାକୁ ଶ୍ରୀକୃଷ୍ଣ ଶ୍ରୀମଦ୍ଭାଗବତରେ ନିଷେଧ କରିଛନ୍ତି ।

''ପରସ୍ୱଭାବକର୍ମାଣି ନ ପ୍ରଶଂସେନ୍ନ ଗର୍ହୟେତ୍ ।
ବିଶ୍ୱମେକାତ୍ମକଂ ପଶ୍ୟନ୍ ପ୍ରକୃତ୍ୟା ପୁରୁଷେଣ ଚ ॥''

(ଶ୍ରୀଭା: ୧୧।୨୮।୧)

ଅର୍ଥାତ୍ ପ୍ରକୃତି ଓ ପୁରୁଷ ସହିତ ଏହି ନିଖିଳ ବିଶ୍ୱକୁ ଏକ ଅନ୍ତର୍ଯାମୀ ପୁରୁଷଙ୍କ ଦ୍ୱାରା ନିୟନ୍ତ୍ରିତ ଜାଣି ପରର ସ୍ୱଭାବ ଓ କର୍ମାଦିର ପ୍ରଶଂସା ବା ନିନ୍ଦା କରିବ ନାହିଁ । କାରଣ ବିଶ୍ୱ ଏକ ଆତ୍ମା ଅର୍ଥାତ୍ ପରମାତ୍ମାଙ୍କ ଦ୍ୱାରା ହିଁ ଚାଳିତ । ତେଣୁ ଯେ ଯାହା କରୁଛି, ସେ ପରମାତ୍ମାଙ୍କ ଦ୍ୱାରା ଚାଳିତ ହୋଇ ହିଁ ତାହା କରୁଛି । ସେହି କାରଣରୁ ସେ ଦୋଷୀ ନୁହେଁ, ତେଣୁ ନିନ୍ଦାର ଯୋଗ୍ୟ ମଧ୍ୟ ନୁହେଁ ।

ଶ୍ରୀଚୈତନ୍ୟ ମହାପ୍ରଭୁ ମଧ୍ୟ କହିଛନ୍ତି–

''ଉତ୍ତମ ହୈୟା ବୈଷ୍ଣବ ହବେ ନିରଭିମାନ ।
ଜୀବେ ସମ୍ମାନ ଦିବେ ଜାନି କୃଷ୍ଣ ଅଧିଷ୍ଠାନ ॥''

(ଶ୍ରୀଚୈ:ଚ: ୩।୨୦।୨୦)

ଅର୍ଥାତ୍ ବୈଷ୍ଣବ ସର୍ବୋତ୍ତମ ହୋଇଥିଲେ ମଧ୍ୟ ସେଥିପାଇଁ ସେ କୌଣସି ଗର୍ବ ବା ଅହଙ୍କାର ନ କରି ନିରଭିମାନ ହେବ । ପ୍ରତ୍ୟେକ ଜୀବ ହୃଦୟରେ ବିଷ୍ଣୁ ଅନ୍ତର୍ଯାମୀରୂପେ ଅଛନ୍ତି ଏବଂ ତାର ଇଚ୍ଛାଶକ୍ତି ଓ କ୍ରିୟାଶକ୍ତି ସେହି ବିଷ୍ଣୁଙ୍କ ଦ୍ୱାରା ହିଁ ଚାଳିତ । ତେଣୁ ଯେ ଯାହା କରୁଛି ସେହି ଅନ୍ତର୍ଯାମୀ ପରମାତ୍ମାଙ୍କ ପ୍ରେରଣାରେ ହିଁ କରୁଛି । ଏଥିରେ ତାର କୌଣସି ଦୋଷ ନାହିଁ । ମୋ ପୂର୍ବଜନ୍ମର କର୍ମର ଫଳ ଭୋଗ କରାଇବା ପାଇଁ ସେହି ପରମାତ୍ମାଙ୍କର ହିଁ ତା'ଦ୍ୱାରା ମୋ ପ୍ରତି ଏହି ବ୍ୟବସ୍ଥା । ତେଣୁ କାହାରି ଦୋଷ ନ ଦେଖି ନିର୍ବିଚାରରେ ସବୁ ସହିଯିବାକୁ ହେବ ଏବଂ ହୃଦୟରେ ଏହିପ୍ରକାର ଭାବ ରଖି ଶ୍ରୀହରିଙ୍କ କୃପାଲାଭ ଆଶାରେ ବ୍ୟାକୁଳ ହୋଇ ତାଙ୍କ ନାମ କୀର୍ତ୍ତନ କରିବାକୁ ହେବ ।

**ସୁବଳ–**ସାପଟାଏ ଆମ ଘର ଭିତରେ ପଶିଛି, ଆମେ ତାକୁ ମାରିଦେଲେ କ'ଣ ଦୋଷ ହେବ ? ନ ମାରିଲେ ତ ସେ କେତେବେଳେ କାହାକୁ କାମୁଡ଼ି ଦେବ ।

**ବାବାଜୀ ମହାରାଜ–**ଭଗବାନଙ୍କୁ ଭୁଲି ମାୟାଗ୍ରସ୍ତ ହୋଇଥିବା ହେତୁ ଆମେ ଏଇ ଆଗନ୍ତୁକ ନଷ୍ଟଶୀଳ ଜଡ଼ ଦେହଟାକୁ ଆମର ନିଜର ସ୍ୱରୂପ ଜ୍ଞାନ କରି ବିଭ୍ରାନ୍ତ ହୋଇଛୁ । ସେହି କାରଣରୁ ଦେହର ସୁଖ ସମ୍ପାଦନ କରିବାକୁ ଯାଇ ଆମେ ଯେ କୌଣସି ହୀନ କାର୍ଯ୍ୟ କରିବାକୁ ମଧ୍ୟ ପଛଘୁଞ୍ଚା ଦେଉ ନାହୁଁ ।

ସାପର କଅଣ ଆଉ କିଛି କାମ ନାହିଁ, ଖାଲି ଅନ୍ୟକୁ କାମୁଡ଼ିବା ତା'ର ଏକମାତ୍ର କାମ ? ପରମାତ୍ମା ଅନ୍ତର୍ଯାମୀରୂପେ ସର୍ବଜୀବ ହୃଦୟରେ ଅବସ୍ଥାନ କରୁଛନ୍ତି ଏବଂ ପ୍ରତ୍ୟେକ ଜୀବର ଇଚ୍ଛାଶକ୍ତି ଓ କ୍ରିୟାଶକ୍ତିର ଚାଳକ ହିସାବରେ ସେ ପ୍ରତ୍ୟେକ ଜୀବକୁ ଚାଳିତ କରୁଛନ୍ତି । ସାପ ମଧ୍ୟ ତାଙ୍କରି ଦ୍ୱାରା ଚାଳିତ ହୋଇ ଯଦି କାହାକୁ କାମୁଡ଼େ, ତେବେ ଜାଣିବାକୁ ହେବ ଯେ, ସେ ଯାହାକୁ କାମୁଡ଼ିଲା ସେ ନିଶ୍ଚିତରୂପେ ପୂର୍ବଜନ୍ମରେ ସାପ ଦେହଧାରୀର କ୍ଷତି କରିଥିଲା, ଯାହା ଫଳରେ ତାକୁ କାମୁଡ଼ିବା ପାଇଁ ପରମାତ୍ମା ସାପ ଦେହଧାରୀକୁ ପ୍ରେରଣା ଦେଲେ । ସୁତରାଂ ଏସବୁ କାର୍ଯ ପୂର୍ବନିର୍ବନ୍ଧିତ । ଏଥିରେ ସାପର କୌଣସି ଦୋଷ ନାହିଁ । ତେଣୁ ସାପକୁ ମାରିବା ଘୋର ଅନ୍ୟାୟ । କୌଣସି ଜୀବକୁ ନ ମାରି ବା କୌଣସି କଷ୍ଟ ନ ଦେଇ ସେମାନଙ୍କୁ ସ୍ନେହ କରିବା ଉଚିତ ।

ପୂର୍ବକାଳରେ ମୁନିଋଷିମାନେ ବନରେ ବାସ କରୁଥିଲେ । ସମଦର୍ଶୀ ହୋଇଥିବାରୁ ସେମାନଙ୍କର କାହାରି ପ୍ରତି ହିଂସାଭାବ ତ ନ ଥିଲା ବରଂ ଅନ୍ତର୍ଯାମିଦୃଷ୍ଟିରେ ସେମାନେ ପ୍ରତ୍ୟେକ ଜୀବକୁ ସ୍ନେହ କରୁଥିଲେ । ହିଂସ୍ର ଜନ୍ତୁମାନଙ୍କ ହୃଦୟରେ ସେହି ପରମାତ୍ମା ଅଛନ୍ତି । ତେଣୁ ତାଙ୍କରି ପ୍ରେରଣାରେ ସେମାନେ ମୁନିଋଷିମାନଙ୍କୁ ହିଂସା ନ କରି ସେମାନଙ୍କ ସହିତ ବନ୍ଧୁ ପରି ଆଚରଣ କରୁଥିଲେ । ଏହା ହିଁ ଭାଗବତୀୟ ସଂସ୍କୃତି ଏବଂ ଏହା ହିଁ ଭଗବତଧର୍ମଯାଜୀର ମୁଖ୍ୟ ଆଚରଣ ।

**ସୁବଳ**—ତାହାହେଲେ ପୁଅ ଦୁଷ୍ଟାମି କଲେ ବି ବାପା ତାର ଦୋଷ ଦେଖିବା କି ତାକୁ ଶାସନ କରିବା ତ ଅନ୍ୟାୟ ?

**ବାବାଜୀ ମହାରାଜ**—ଜଣକୁ ହୀନ କରିବା ଉଦ୍ଦେଶ୍ୟରେ ତାର ଦୋଷ ଦେଖିବାଟା ହେଲା ଦୋଷଦର୍ଶନ ଏବଂ ଏହା ସର୍ବତୋଭାବେ ବର୍ଜନୀୟ ବୋଲି ଶ୍ରୀକୃଷ୍ଣ କହିଲେ । ଶ୍ରୀକୃଷ୍ଣଙ୍କର ଏପରି ଉପଦେଶର ଉଦ୍ଦେଶ୍ୟ ହେଲା ଏହି ଯେ, ଯେତେବେଳେ ପ୍ରତ୍ୟେକ ଜୀବର ଇଚ୍ଛାଶକ୍ତି ଓ କ୍ରିୟାଶକ୍ତିର ଚାଳକ ହେଲେ ପରମାତ୍ମା, ସେ ଅବସ୍ଥାରେ ଜୀବ ଯାହା କରୁଛି, ତହିଁରେ ତାହାର କିଛି କର୍ତ୍ତୃତ୍ୱ ନାହିଁ । ତେଣୁ ତାହାର ଦୋଷ ଦେଖିବା ଅନୁଚିତ । କିନ୍ତୁ ଜଣକର ଦୋଷ ଦେଖାଇ ଦେଇ ତାକୁ ଶାସନ କରି ଭଲ ବାଟକୁ ଆଣିବାର ଯେଉଁ ଚେଷ୍ଟା, ତାହାକୁ ଦୋଷଦର୍ଶନ କୁହାଯିବ ନାହିଁ ବରଂ ଏହା କର୍ତ୍ତବ୍ୟ । କାରଣ ଏଥିରେ ଯାହାର ଦୋଷ ଦେଖା ହେଉଛି, ତାକୁ ସେହି ଦୋଷମୁକ୍ତ କରାଇ ଭଲ କରାଇବା ହିଁ ଏକମାତ୍ର ଉଦ୍ଦେଶ୍ୟ । ଏହା ବନ୍ଧୁର ହିଁ କାର୍ଯ । ତେଣୁ ଏହି କାର୍ଯ ଆଦରଣୀୟ, ଆଦୌ ଦୂଷଣୀୟ ନୁହେଁ ।

**ସୁବଳ**—ଆଜ୍ଞା, ଆପଣଙ୍କ ଉପଦେଶର ମର୍ମ ବର୍ତ୍ତମାନ ଠିକ୍ ବୁଝି ପାରିଛି । ମୋର ସମସ୍ତ ସନ୍ଦେହ ଦୂର ହୋଇଗଲା । ମୁଁ ଆଜିଠାରୁ କାହାରି ଦୋଷ ଦେଖିବି ନାହିଁ । ପରମାତ୍ମା ଅନ୍ତର୍ଯାମୀରୂପେ ସବୁ ଜୀବଙ୍କ ହୃଦୟରେ ଅବସ୍ଥାନ କରୁଛନ୍ତି, ଏହି ବିଚାରରେ ତାଙ୍କ ଅଧିଷ୍ଠାନ ଜ୍ଞାନରେ ପ୍ରତ୍ୟେକ ଜୀବଙ୍କୁ ସମ୍ମାନ କରିବି ।

**ବାବାଜୀ ମହାରାଜ**—କେବଳ ସମ୍ମାନ ନୁହେଁ, ନିଜ ପୁଅ ପରି ସ୍ନେହ କରିବାକୁ ହେବ ବୋଲି ଶ୍ରୀମଦ୍‌ଭାଗବତରେ ଶ୍ରୀନାରଦ ଯୁଧିଷ୍ଠିର ମହାରାଜଙ୍କୁ କହିଛନ୍ତି—

''ମୃଗୋଷ୍ଟ୍ରଖରମର୍କାଖୁସରୀସୃପ୍‌ଖଗମକ୍ଷିକାଃ ।
ଆତ୍ମନଃ ପୁତ୍ରବତ୍ ପଶ୍ୟେତ୍ ତୈରେଷାମନ୍ତରଂ କିୟତ୍ ॥''

(ଶ୍ରୀଭା: ୭।୧୪।୯)

ଅର୍ଥାତ୍ ମୃଗ, ଓଟ, ଗଧ, ମାଙ୍କଡ଼, ମୂଷା, ସରୀସୃପ, ପକ୍ଷୀ ଓ ମାଛି ଇତ୍ୟାଦିଙ୍କୁ ନିଜ ପୁଅ ପରି ସ୍ନେହ କରିବ । ସେମାନଙ୍କ ଆତ୍ମା ଓ ପୁଅର ଆତ୍ମା ମଧ୍ୟରେ କି ପାର୍ଥକ୍ୟ ଅଛି ?

**ସୁବଳ**—ଆଜ୍ଞା, ଆଜିଠାରୁ କାହାରି ଦୋଷ ନ ଦେଖି କୀଟ ପତଙ୍ଗଠାରୁ ଆରମ୍ଭ କରି ମନୁଷ୍ୟ ପର୍ଯ୍ୟନ୍ତ ସମସ୍ତଙ୍କୁ ନିଜ ପୁତ୍ର ପରି ସ୍ନେହ କରିବି ।

## ଅନ୍ତର୍ଯାମିଦର୍ଶନପୂର୍ବକ ଭୂତାଦରର ଫଳ ସଂସାରମୁକ୍ତି

**ବାବାଜୀ ମହାରାଜ**—ଏହା ହେଲା ସାଧନର ଗୋଟିଏ ପ୍ରଧାନ ଅଙ୍ଗ । ଅନ୍ତର୍ଯାମି-ଦୃଷ୍ଟିରେ ସମସ୍ତଙ୍କୁ ଆଦର କରିପାରିଲେ ଏହି ଜନ୍ମରେ ହିଁ ସଂସାରବନ୍ଧନ ଦୂର ହେବ । ଏପରି କରିବା ସଙ୍ଗେ ସଙ୍ଗେ ଯାହା କିଛି କର୍ମ କରିବ ତଦ୍ୱାରା ଶ୍ରୀବିଷ୍ଣୁ କିପରି ସନ୍ତୁଷ୍ଟ ହେବେ ସେହି ଚିନ୍ତାଟି କରିବ । ଜୀବ ନିଜ ସୁଖ ପାଇଁ ଯେଉଁ କର୍ମ କରେ ସେହି କର୍ମର ଗୋଟିଏ ଫଳ ତାହା ପାଇଁ ସଞ୍ଚିତ ହୋଇ ରହେ ଏବଂ ସେହି କର୍ମର ଫଳ ଭୋଗ କରିବାକୁ ତାକୁ ସଂସାରକୁ ଆସିବାକୁ ପଡ଼େ । ଏହିପରି ଜୀବର ପୁନଃ ପୁନଃ ସଂସାର ଗମନାଗମନ ଚାଲିଥାଏ । ଏହା ହିଁ ଜୀବର ସଂସାରବନ୍ଧନ । କିନ୍ତୁ ଆମେ ଆମର ଖାଇବା, ଶୋଇବା ଓ ସଂସାରନିର୍ବାହାଦି ଯାବତୀୟ କାର୍ଯ୍ୟ ନିଜ ସୁଖ ଉଦ୍ଦେଶ୍ୟରେ ନ କରି ଯଦି ଭଗବାନଙ୍କ ସୁଖ ଉଦ୍ଦେଶ୍ୟରେ କରୁ, ତାହାହେଲେ ସେହି କର୍ମର ଫଳ ଆମକୁ ଭୋଗିବାକୁ ପଡ଼ିବ ନାହିଁ । କାରଣ ଉକ୍ତ କର୍ମରୁ କୌଣସି ଫଳ ଆମେ ଆଶା କରିନାହୁଁ । ଏଥିରୁ ଜଣାଯାଉଛି ଯେ, ଜୀବର ବାସନାନୁସାରେ ହିଁ କର୍ମର ଫଳ ଫଳେ । ନିଜ ସୁଖ ପାଇଁ କର୍ମ କଲେ ସେହି କର୍ମର ଫଳ ଆମକୁ ଭୋଗିବାକୁ ପଡ଼େ । କିନ୍ତୁ ଭଗବାନଙ୍କ ସୁଖ ଉଦ୍ଦେଶ୍ୟରେ ସେହି କର୍ମ କଲେ ତାହାର ଫଳ ଆମକୁ ଭୋଗ କରିବାକୁ ପଡ଼େ ନାହିଁ । ଏହିପରି ଭାବରେ ଜୀବର ସଂସାରଗମନାଗମନ ବନ୍ଦ ହୋଇଯାଏ ଅର୍ଥାତ୍ ସେ ସଂସାରବନ୍ଧନରୁ ମୁକ୍ତ ହୋଇଯାଏ । ସଂସାରବନ୍ଧନମୋଚନର ଏହି ବୈଜ୍ଞାନିକ ଉପାୟ ଶ୍ରୀମଦ୍‌ଭାଗବତରେ ଏହିପରି ବର୍ଣ୍ଣିତ ହୋଇଛି —''ଏତତ୍ ସଂସୂଚିତଂ ବ୍ରହ୍ମଂସ୍ତାପତ୍ରୟ-ଚିକିତ୍ସିତମ୍ । ଯଦୀଶ୍ୱରେ ଭଗବତି କର୍ମ ବ୍ରହ୍ମଣି ଭାବିତମ୍ ।'' (ଶ୍ରୀଭା: ୧।୫।୩୨) ଅର୍ଥାତ୍ ହେ ବ୍ରହ୍ମନ୍ଜ୍ଞ, ସର୍ବନିୟନ୍ତା ଭଗବାନଙ୍କଠାରେ ଯେଉଁ କର୍ମ ସମର୍ପିତ ହୁଏ, ତାହା ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ ତାପ ଉପଶମର କାରଣ ହୋଇଥାଏ ।

**ସୁବଳ**—ସଂସାରବନ୍ଧନମୋଚନର ଏତେ ସୁନ୍ଦର ବ୍ୟବସ୍ଥା ଥିବା ସତ୍ତ୍ୱେ ସମସ୍ତେ କାହିଁକି ଭଗବାନଙ୍କ ସୁଖ ଉଦ୍ଦେଶ୍ୟରେ କର୍ମ କରୁ ନାହାନ୍ତି ?

**ବାବାଜୀ ମହାରାଜ**—ସବୁର ମୂଳ ହେଲା ସାଧୁଙ୍କ କୃପା । ସାଧୁଙ୍କ କୃପା ନ ଥିଲେ ଭଗବାନଙ୍କ ସୁଖଚିନ୍ତା ମାୟାଗ୍ରସ୍ତ ଜୀବ ହୃଦୟରେ ଜାଗିବା ଅସମ୍ଭବ । ସେହି ହେତୁରୁ ପୂର୍ବରୁ କହିଛି ଯେ, ସାଧୁଙ୍କ କୃପା ପାଇବା ପାଇଁ ଭଗବାନଙ୍କ ଶ୍ରୀପାଦପଦ୍ମରେ ବ୍ୟାକୁଳ ପ୍ରାର୍ଥନା କରିବାକୁ ପଡ଼ିବ । **"କୃଷ୍ଣଭକ୍ତି-ଜନ୍ମମୂଳ ହୟ ସାଧୁସଙ୍ଗ ।"**—ଏହା ଶ୍ରୀଳ ସନାତନ ଗୋସ୍ୱାମୀଙ୍କୁ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଶିକ୍ଷା ।

ଅନ୍ତର୍ଯାମିଦୃଷ୍ଟିରେ ସମସ୍ତଙ୍କୁ ଆଦର କରିବା କଥା ଯାହା କହିଲି ଏହାଦ୍ୱାରା ଭଗବାନ୍ ସନ୍ତୁଷ୍ଟ ହେବେ । ଏହିପରି ସମସ୍ତ ପ୍ରାଣୀଙ୍କୁ ଆଦର କରି ପାରିଲେ ଏହି ଜନ୍ମରେ ହିଁ ରଜସ୍ତମୋଗୁଣରୁ ମୁକ୍ତି ବା ସଂସାରମୁକ୍ତି ଅନିବାର୍ଯ ହୋଇଯିବ ।

**ସୁତରାଂ ଅନ୍ତର୍ଯାମିଦୃଷ୍ଟିରେ ସବୁ ପ୍ରାଣୀଙ୍କୁ ଆଦର କରିବା ସଙ୍ଗେ ସଙ୍ଗେ ଭଗବାନଙ୍କ ପ୍ରୀତି ଉଦ୍ଦେଶ୍ୟରେ ସମସ୍ତ କର୍ମର ଫଳ ଅର୍ପଣ କରିବା ହେଲା ଭକ୍ତିସାଧନର ଦ୍ୱିତୀୟ ସୋପାନ ।** ବସ୍ତୁତଃ ଏହିଠାରୁ ହିଁ ଭକ୍ତିସାଧନର ପୂର୍ବାଙ୍ଗ ଆରମ୍ଭ ।

## ହ୍ଲାଦିନୀ ଶକ୍ତିଙ୍କ କୃପା ହିଁ ଜୀବର ଶୁଦ୍ଧଭକ୍ତି ଲାଭର ଏକମାତ୍ର କାରଣ

ଏହି କର୍ମାର୍ପଣ ବାହାରକୁ ଭକ୍ତି ପରି ଦେଖାଯାଉଥିବାରୁ ଏହାକୁ ଅନେକେ ଭକ୍ତି ବୋଲି ମନେ କରନ୍ତି । ବସ୍ତୁତଃ ଏହି ଭକ୍ତି କର୍ମମିଶ୍ରା ହେଉଥିବାରୁ ଅର୍ଥାତ୍ ଏଥିରେ ସାଧକର 'ମୁଁ କରୁଛି' ବୋଲି ଅହଙ୍କାର ପ୍ରବଳ ଥିବାରୁ ଏହା ସ୍ୱରୂପତଃ କର୍ମ ହିଁ ହୋଇଥାଏ । ଏଥିରେ ଭକ୍ତିତ୍ୱ ଆରୋପ କରା ହୋଇଥାଏ ମାତ୍ର । ଭଗବାନଙ୍କ ପ୍ରୀତି ଉଦ୍ଦେଶ୍ୟରେ ଅନୁଷ୍ଠିତ ହେଉଥିବା ହେତୁ ଏହାକୁ କର୍ମାର୍ପଣ (ଭକ୍ତିମାତ୍ରକାମ କର୍ମାର୍ପଣ) କୁହାଯାଏ । ଏହିପ୍ରକାର କର୍ମାର୍ପଣ କରୁ କରୁ କ୍ରମଶଃ ଚିତ୍ତ ରଜସ୍ତମୋଗୁଣମୁକ୍ତ ହୁଏ । ଏହାକୁ ଅନର୍ଥନିବୃତ୍ତି କୁହାଯାଏ । ଚିତ୍ତ ରଜସ୍ତମୋଗୁଣମୁକ୍ତ ହୋଇ ଶୁଦ୍ଧ ହେଲେ ହ୍ଲାଦିନୀ ଶକ୍ତି ତହିଁରେ ପ୍ରବେଶ କରନ୍ତି । ଏହି ହ୍ଲାଦିନୀ ଶକ୍ତିଙ୍କ କୃପାରୁ ଜୀବ ସମ୍ପୂର୍ଣ୍ଣରୂପେ ଭଗବାନଙ୍କ ପ୍ରୀତି ଉଦ୍ଦେଶ୍ୟରେ ସ୍ୱତଃପ୍ରବୃତ୍ତ ହୋଇ ଭକ୍ତିର ଅନୁଷ୍ଠାନ କରେ । ଜୀବର ଏହି ଅବସ୍ଥାକୁ ଜାତରତି ଅବସ୍ଥା କୁହାଯାଏ । ଏହି **ଜାତରତି ସାଧକ ହିଁ ଶୁଦ୍ଧଭକ୍ତି ସାଧନର ଅଧିକାରୀ ।** ଶାସ୍ତ୍ରରେ ଶୁଦ୍ଧଭକ୍ତିସମ୍ବନ୍ଧୀୟ ଯେତେ ଉପଦେଶ ଦିଆହୋଇଛି, ତାହା ଏହିମାନଙ୍କ ପାଇଁ ହିଁ ଉଦ୍ଦିଷ୍ଟ, ଅଜାତରତି ବ୍ୟକ୍ତିଙ୍କ ପାଇଁ ନୁହେଁ । ପ୍ରାଥମିକ ଅବସ୍ଥାରେ ପ୍ରାୟ ସମସ୍ତେ ତ ଅଜାତରତି । ଏହି ଅଜାତରତି ବ୍ୟକ୍ତିଙ୍କୁ ଶୁଦ୍ଧଭକ୍ତିର ଉପଦେଶ ଦେବାଦ୍ୱାରା ଜଗଜ୍ଜଞ୍ଜାଳ ହିଁ ସୃଷ୍ଟି ହେଉଛି । ବର୍ତ୍ତମାନ ପୃଥିବୀରେ ସର୍ବତ୍ର ଏହି ଅବ୍ୟବସ୍ଥା । ଏମାନେ ଏହିପ୍ରକାର ତଥାକଥିତ ଭକ୍ତି ସାଧନ କରି

କେବେହେଲେ ପ୍ରେମ ପାଇବେ ନାହିଁ । ତେଣୁ ବାଧ ହୋଇ କୃତ୍ରିମଭାବରେ ଭାବ ଅଭ୍ୟାସ କରି ନିଜର ସର୍ବନାଶ କରିବା ସଙ୍ଗେ ସଙ୍ଗେ ଅନ୍ୟ କୋମଳଶ୍ରଦ୍ଧ ବ୍ୟକ୍ତିମାନଙ୍କର ମଧ୍ୟ ସର୍ବନାଶ ସାଧନ କରିଥାନ୍ତି । ସୁତରାଂ ଏଥିପ୍ରତି ସର୍ବଦା ସାବଧାନ ରହିବା ଉଚିତ ।

## ଶୁଦ୍ଧଭକ୍ତି ସାଧନର ତୃତୀୟ ସୋପାନ

ଜାତରତି ଭୂମିକାରେ ଯେଉଁ ସାଧନ, ତାହା ହିଁ ବାସ୍ତବରେ ଶୁଦ୍ଧଭକ୍ତିସାଧନ । ଏହି ଅବସ୍ଥାରେ ହିଁ ସାଧକକୁ ଶୁଦ୍ଧଭକ୍ତ କୁହାଯିବ । ଆଜିକାଲି ଅଧିକାର ବିଚାର ନ କରି ଶିଷ୍ୟବୃଦ୍ଧି ପ୍ରତି ଲୋଭାକୃଷ୍ଟ ହୋଇ ଅଧିକାଂଶ ତଥାକଥିତ ଗୁରୁ ଅଜାତରତି ବ୍ୟକ୍ତିମାନଙ୍କୁ ଶିଷ୍ୟ କରି ଶୁଦ୍ଧଭକ୍ତି ସାଧନର ଉପଦେଶ ଦେଉଛନ୍ତି । କିନ୍ତୁ ଅନଧିକାରୀ ହୋଇଥିବାରୁ ସେମାନେ ସମସ୍ତେ କୃତ୍ରିମପନ୍ଥୀ ହେବାକୁ ବାଧ ହେଉଛନ୍ତି । ବର୍ତ୍ତମାନ ବୈଷ୍ଣବଜଗତର ଏହି ଦୁରବସ୍ଥା ପ୍ରାୟ ସର୍ବତ୍ର ପରିଲକ୍ଷିତ ହେଉଛି । ଏହି ଅନଧିକାରୀ ସାଧକଙ୍କ ହୃଦୟ ରଜସ୍ତମୋଗୁଣର କ୍ରୀଡ଼ାଭୂମି ହୋଇଥିବାରୁ ହ୍ଲାଦିନୀ ଶକ୍ତି ତହିଁରେ ପ୍ରବେଶ କରି ପାରୁନାହାନ୍ତି । ତେଣୁ ରଜସ୍ତମୋଗୁଣରେ ପ୍ରଭାବିତ ହୋଇ ଭଗବାନଙ୍କ ସୁଖ କାମନା ନ କରି ସେମାନେ ଅର୍ଥଲାଭ ଓ ପ୍ରତିଷ୍ଠାଲାଭାଦି ଉଦ୍ଦେଶ୍ୟରେ ହିଁ ସଗୁଣା ସକାମା ଭକ୍ତିରେ ପ୍ରବୃତ୍ତ ହେଉଛନ୍ତି ।

ଜୀବ କିପରି ଶୁଦ୍ଧଭକ୍ତିସାଧନର ଅଧିକାରୀ ହୁଏ, ସେ ସମ୍ବନ୍ଧରେ ଶ୍ରୀଳ ଜୀବପାଦ ଶ୍ରୀପ୍ରୀତିସନ୍ଦର୍ଭ ୬୫ତମ ଅନୁଚ୍ଛେଦରେ ଉଲ୍ଲେଖ କରିଛନ୍ତି–''ତସ୍ୟା ହ୍ଲାଦିନ୍ୟା ଏବ କାପି ସର୍ବାନନ୍ଦାତିଶାୟିନୀ ବୃତ୍ତିର୍ନିତ୍ୟଂ ଭକ୍ତବୃନ୍ଦେଷ୍ୱେବ ନିକ୍ଷିପ୍ୟମାଣା ଭଗବତ୍‌ପ୍ରୀତ୍ୟାଖ୍ୟୟା ବର୍ତ୍ତତେ । ଅତସ୍ତଦନୁଭବେନ ଶ୍ରୀଭଗବାନପି ଶ୍ରୀମଦ୍‌ଭକ୍ତେଷୁ ପ୍ରୀତ୍ୟତିଶୟଂ ଭଜତ ଇତି ।'' ଅର୍ଥାତ୍ ସମସ୍ତ ଆନନ୍ଦକୁ ଟପି ଯାଉଥିବା ସେହି ହ୍ଲାଦିନୀର କୌଣସି ଏକ ବୃତ୍ତି ନିତ୍ୟକାଳ ଭକ୍ତମାନଙ୍କ ମଧ୍ୟରେ ନିକ୍ଷିପ୍ତ ହୋଇ ଭଗବତ୍‌ପ୍ରୀତିନାମରେ ବର୍ତ୍ତମାନ ରହିଅଛି । ତାହା ଅନୁଭବ କରି ଶ୍ରୀଭଗବାନ୍ ମଧ୍ୟ ଭକ୍ତମାନଙ୍କର ଅତିଶୟ ପ୍ରୀତିଭାଗୀ ହୁଅନ୍ତି । ଏଠାରେ ଶ୍ରୀଭଗବାନ୍ ଭକ୍ତବୃନ୍ଦଙ୍କ ହୃଦୟକୁ ତାଙ୍କ ହ୍ଲାଦିନୀ ଶକ୍ତିକୁ ନିକ୍ଷେପ କରିବା କଥା କୁହାଯାଇଛି । ଯାହା ହୃଦୟରେ ହ୍ଲାଦିନୀ ଶକ୍ତିଙ୍କ ଅବସ୍ଥିତି ଅଛି, ସେ ତ ଭକ୍ତ ହୋଇଛି । ତା' ହୃଦୟକୁ ପୁଣି ହ୍ଲାଦିନୀ ଶକ୍ତିକୁ ନିକ୍ଷେପ କରିବା କଥା ପିଷ୍ଟପେଷଣ ନ୍ୟାୟାନୁସାରେ ନିରର୍ଥକ ନୁହେଁ କି ? ଏପରି ଅବସ୍ଥାରେ ଭକ୍ତମାନଙ୍କ ହୃଦୟକୁ ହ୍ଲାଦିନୀ ଶକ୍ତିକୁ ନିକ୍ଷେପ କରିବାର ପ୍ରକୃତ ଅର୍ଥ କଅଣ ? ଏହାର ଉତ୍ତରରେ କୁହାଯିବ ଯେ ଭଗବାନ୍ ସର୍ବଜୀବହୃଦୟକୁ ତାଙ୍କ ହ୍ଲାଦିନୀ ଶକ୍ତିକୁ ନିକ୍ଷେପ କରୁଛନ୍ତି । କିନ୍ତୁ ଜୀବହୃଦୟ ରଜସ୍ତମୋଗୁଣରେ ପରିପୂର୍ଣ୍ଣ ଥିବାରୁ ତହିଁରେ ହ୍ଲାଦିନୀ ଶକ୍ତି ପ୍ରବେଶ କରି ପାରନ୍ତି ନାହିଁ । ସେହି ହ୍ଲାଦିନୀ ଶକ୍ତିଙ୍କ ପ୍ରେରଣାରେ ଜୀବମାନଙ୍କୁ ଭଗବାନଙ୍କ ପ୍ରତି ଉନ୍ମୁଖ କରାଇବା ପାଇଁ ସାଧୁମାନେ ଏ ଜଗତକୁ ଆସନ୍ତି । ସେମାନେ ଶାସ୍ତ୍ରକଥା କହି ଜୀବକୁ ଭଗବାନଙ୍କ ପ୍ରତି ଉନ୍ମୁଖ ହେବା ପାଇଁ ଉପଦେଶ ଦିଅନ୍ତି । ସେମାନଙ୍କ କଥା ଶୁଣି ସେମାନଙ୍କ କୃପା ପ୍ରଭାବରୁ ଜୀବ ଭଗବାନଙ୍କୁ ସୁଖୀ କରିବା ଉଦ୍ଦେଶ୍ୟରେ ସାଧନରେ ପ୍ରବୃତ୍ତ

ହୋଇଥାଏ । ସେମାନଙ୍କର ଭୋଗାସକ୍ତି ଥିଲେ ମଧ୍ୟ ସାଧୁମାନଙ୍କ କୃପାରୁ ଭଗବାନଙ୍କର ଯେଉଁ ସୁଖଚିନ୍ତା ସେମାନଙ୍କ ହୃଦୟରେ ସଞ୍ଚାରିତ ହୋଇଥାଏ, ସେହି ସୁଖଚିନ୍ତାହେତୁ ହିଁ ସେମାନଙ୍କୁ ଭକ୍ତ ବୋଲି "ବାଧମାନୋଽପି ମଭକ୍ତଃ (ଶ୍ରୀଭା:୧୧।୧୪।୧୮) ଓ ଅପି ଚେତ୍ ସୁଦୁରାଚାରଃ.... (ଶ୍ରୀଗୀତା:୯।୩୦) ରେ କୁହାଯାଇଛି । ସେମାନଙ୍କ ହୃଦୟରେ ଭଗବଦ୍-ସୁଖଚିନ୍ତାର ସ୍ଥିତି ହେତୁ ହିଁ ସେମାନଙ୍କୁ ଭକ୍ତ ବୋଲି କୁହାଯାଇଛି । ଅବଶ୍ୟ ଏହି ସୁଖଚିନ୍ତା ଠିକ୍ ସୁଖଚିନ୍ତା ନୁହେଁ, ଏହା ସୁଖଚିନ୍ତାର ଆଭାସମାତ୍ର । ବସ୍ତୁତଃ ସେହିମାନେ ହେଲେ ଭକ୍ତିମାତ୍ରକାମ କର୍ମାର୍ପଣକାରୀ । ସେହିମାନଙ୍କ ହୃଦୟସ୍ଥ ଭଗବଦ୍‌ସୁଖଚିନ୍ତାର ଆଭାସ ଓ ସେମାନଙ୍କ ଆର୍ତ୍ତିକୁ ଲକ୍ଷ୍ୟ କରି ହ୍ଲାଦିନୀ ଶକ୍ତି ସେହିମାନଙ୍କ ହୃଦୟରେ ହିଁ ପ୍ରବେଶ କରି ସେମାନଙ୍କୁ ଭଗବଦ୍‌ସୁଖଚିନ୍ତାରେ ଆବିଷ୍ଟ କରାନ୍ତି ।

## ଶ୍ରୀକୃଷ୍ଣଙ୍କୁ ତାଙ୍କ ସୁଖ ପାଇଁ ଭଲପାଇବା ହିଁ ଭକ୍ତି

ଶ୍ରୀରୂପପାଦ ଶ୍ରୀଭକ୍ତିରସାମୃତସିନ୍ଧୁ (୧।୪।୨)ରେ ଉଲ୍ଲେଖ କରିଛନ୍ତି – "ଅନନ୍ୟ-ମମତା ବିଷ୍ଣୌ ମମତା ପ୍ରେମସଙ୍ଗତା । ଭକ୍ତିରିତ୍ୟୁଚ୍ୟତେ ଭୀଷ୍ମପ୍ରହ୍ଲାଦୋଦ୍ଧବନାରଦୈଃ ।" ଅର୍ଥାତ୍ ଅନ୍ୟ କୌଣସି ବସ୍ତୁ ପ୍ରତି ମମତା ନ ରଖି କେବଳ ଶ୍ରୀବିଷ୍ଣୁଙ୍କ ପ୍ରୀତି ଉଦ୍ଦେଶ୍ୟରେ ତାଙ୍କ ପ୍ରତି ଯେଉଁ ମମତା, ତାହାକୁ ହିଁ ଭୀଷ୍ମ, ପ୍ରହ୍ଲାଦ, ଉଦ୍ଧବ ଓ ନାରଦ ଇତ୍ୟାଦି ଭକ୍ତି ବୋଲି କହିଛନ୍ତି ।

ସୁବଳ, ଶ୍ରୀବିଷ୍ଣୁ ବା ଶ୍ରୀକୃଷ୍ଣଙ୍କୁ କେବଳ ଭଲ ପାଇବା ଭକ୍ତି ନୁହେଁ । କାରଣ କର୍ମୀ ଇତ୍ୟାଦି ମଧ୍ୟ ଶ୍ରୀକୃଷ୍ଣଙ୍କ ପ୍ରୀତି ପାଇଁ ତାଙ୍କଠାରେ ନିଜ କର୍ମର ଫଳ ଅର୍ପଣ କରିଥାନ୍ତି । ଏଠାରେ ସେମାନଙ୍କର ଯେଉଁ ସୁଖଚିନ୍ତା ତାହା ଶ୍ରୀକୃଷ୍ଣଙ୍କ ପ୍ରୀତି ପାଇଁ କରା ନ ହୋଇ ନିଜ ସ୍ୱାର୍ଥସିଦ୍ଧି ଉଦ୍ଦେଶ୍ୟରେ ହିଁ କରା ହୋଇଥାଏ । ତେଣୁ ଏହି ସୁଖଚିନ୍ତା ଠିକ୍ ସୁଖଚିନ୍ତା ନୁହେଁ । ତାଙ୍କ ପ୍ରୀତି ପାଇଁ ତାଙ୍କର ଯେଉଁ ସୁଖଚିନ୍ତା, ତାହା ହିଁ ଶୁଦ୍ଧଭକ୍ତି । ଏଠାରେ ଭକ୍ତିର ବାହ୍ୟ ଅନୁଷ୍ଠାନର କୌଣସି ପ୍ରାଧାନ୍ୟ ନାହିଁ । ଗୋପୀମାନଙ୍କର ଶ୍ରୀକୃଷ୍ଣଙ୍କୁ ଗାଳିଦେବା, ଶ୍ରୀନନ୍ଦ ମହାରାଜଙ୍କର ନିଜ ପାଦୁକାକୁ ଗୋପାଳଙ୍କୁ ଆଣିବାକୁ କହିବା, ସଖାମାନଙ୍କର ଶ୍ରୀକୃଷ୍ଣଙ୍କ କାନ୍ଧରେ ଚଢ଼ି କୋଳି ତୋଳିବା ଏବଂ କୋଳିକୁ ଚାଖିବା ପରେ ମିଠା ଲାଗୁଥିବା ଅଇଁଠା କୋଳି ଶ୍ରୀକୃଷ୍ଣଙ୍କୁ ଖାଇବାକୁ ଦେବା, ପୁଣି ଶ୍ରୀଗୌରହରିଙ୍କ ସେବକ ଶ୍ରୀଗୋବିନ୍ଦଙ୍କର ତାଙ୍କୁ ଲଂଘନ କରି ଯାଇ ତାଙ୍କ ପାଦସମ୍ବାହନ କରିବା ଆଦି କାର୍ଯ୍ୟ ବାହାରକୁ ସମ୍ପୂର୍ଣ୍ଣ ଅଭକ୍ତି ବୋଲି ବୋଧ ହେଲେ ମଧ୍ୟ ଏହା ବସ୍ତୁତଃ ଭକ୍ତିର ହିଁ ପରାକାଷ୍ଠା । ସୁତରାଂ ଭକ୍ତିରେ ଭକ୍ତିର ବାହ୍ୟ ଆକାର ଅପେକ୍ଷା ହୃଦୟର ଭାବର ହିଁ ପ୍ରାଧାନ୍ୟ । ଏଥିରୁ ସ୍ପଷ୍ଟ ସୂଚିତ ହେଉଛି ଯେ, ଭକ୍ତିରେ ହୃଦୟର ଭାବର ହିଁ ପ୍ରାଧାନ୍ୟ, ଅନୁଷ୍ଠାନର କୌଣସି ପ୍ରାଧାନ୍ୟ ନାହିଁ ।

**ସୁବଳ, ବର୍ତ୍ତମାନ ଭକ୍ତିର ଅସଲ ଅର୍ଥ ବୁଝିଲ ତ ? ଶ୍ରୀକୃଷ୍ଣଙ୍କ ପ୍ରତି ମମତା ବା ଶ୍ରୀକୃଷ୍ଣଙ୍କୁ ଭଲପାଇବା ହିଁ ହେଲା ଭକ୍ତି । ଏହା ପୁଣି କେବଳ ତାଙ୍କ ପ୍ରୀତି ପାଇଁ ହିଁ କରା ହୋଇଥାଏ ।**

ହୃଦୟରେ ହ୍ଲାଦିନୀ ଶକ୍ତିର ପ୍ରବେଶ ନ ହେଲା ପର୍ଯ୍ୟନ୍ତ ଏହିପରି ମମତା ଜୀବ ହୃଦୟରେ ଜାଗିବା କେବେହେଲେ ସମ୍ଭବ ନୁହେଁ । ତେଣୁ ପ୍ରଥମେ ହ୍ଲାଦିନୀ ଶକ୍ତିର କୃପାଦୃଷ୍ଟି ଆମ ପ୍ରତି କିପରି ପଡ଼ିବ, ସେଥିପ୍ରତି ସର୍ବକ୍ଷଣ ତୀବ୍ର ଦୃଷ୍ଟି ରଖିବାକୁ ହେବ । ଏହା ହିଁ ସାଧନର ମୂଳମନ୍ତ୍ର ।

**ସୁବଳ**—ଆଜ୍ଞା, ଆପଣଙ୍କ ଉପଦେଶ ତ ମୁଁ ଚିତ୍ରପୁତ୍ତଳିବତ୍ ସବୁ ଶୁଣୁଛି । ଏହି ହ୍ଲାଦିନୀ ଶକ୍ତିକୁ ଆମ ହୃଦୟରେ ପ୍ରବେଶ କରାଇବା ହିଁ ଯେ ସାଧନର ମୂଳମନ୍ତ୍ର, ତାହା ମୁଁ ବେଶ ବୁଝିପାରୁଛି । ଏହା କିପରି ସମ୍ଭବ ହେବ ?

## କେବଳ ବ୍ୟାକୁଳ କ୍ରନ୍ଦନ ହିଁ ହ୍ଲାଦିନୀଙ୍କ କୃପାକର୍ଷଣ କରେ

**ସୁବଳ**—ଆମ ପ୍ରତି ହ୍ଲାଦିନୀ ଶକ୍ତିଙ୍କ କୃପାଦୃଷ୍ଟିକୁ ଆକୃଷ୍ଟ କରାଇବାର ସହଜ ଉପାୟ କ'ଣ ?

**ବାବାଜୀ ମହାରାଜ**—ମୋ ଭଳି ରଜସ୍ତମୋଗୁଣାକ୍ରାନ୍ତ ସ୍ୱସୁଖକାମୀ ଜୀବ ପ୍ରତି ହ୍ଲାଦିନୀଙ୍କ କୃପାଦୃଷ୍ଟି ଆକୃଷ୍ଟ କରାଇବାର ଏକମାତ୍ର ଉପାୟ ହେଲା ବ୍ୟାକୁଳ କ୍ରନ୍ଦନ । ଏହି କ୍ରନ୍ଦନର କଥା ହିଁ ସ୍ୱୟଂ ଶ୍ରୀଗୌରହରି ଓ ତଦନୁଗ ଶ୍ରୀଳ ସନାତନପାଦ, ଶ୍ରୀରୂପପାଦ, ଶ୍ରୀଜୀବପାଦ ଓ ଶ୍ରୀଳ ନରୋତ୍ତମ ଠାକୁର ଇତ୍ୟାଦି ଶ୍ରୀଗୌରାନୁଗ ଗୋସ୍ୱାମିଗଣ ତାରସ୍ୱରରେ କୀର୍ତ୍ତନ କରି ଯାଇଛନ୍ତି ଏବଂ ନିଜେ ମଧ୍ୟ ତାହା ଆଚରଣ କରି ଦେଖାଇ ଦେଇଛନ୍ତି ।

**ସୁବଳ**—ମୋର ଚିତ୍ତ ତ କଠିନ ହୋଇ ଯାଇଛି । ଯେଉଁ ତଥାକଥିତ ଭକ୍ତିର ଅନୁଷ୍ଠାନ କରୁଛି, ସେଥିରେ ତ ତୃପ୍ତି ଆସିଯାଉଛି । ଏ ଅବସ୍ଥାରେ କ୍ରନ୍ଦନ କଥା ଚିନ୍ତା କରିବା ସୁଦୂରପରାହତ । ସାଧନରେ ଅତୃପ୍ତି ଆସିଲେ ସିନା କ୍ରନ୍ଦନ ଆସିବ । ଏପରି ଅବସ୍ଥାରେ କ୍ରନ୍ଦନ କିପରି ଆସିବ କୃପା କରି ସେ ରାସ୍ତା ଦେଖାଇ ଦିଅନ୍ତୁ ।

**ବାବାଜୀ ମହାରାଜ**—ଏ ଅବସ୍ଥା କେବଳ ତୁମର ନୁହେଁ । ଏ ସଂସାରରେ ଯେତେ ମାୟାବଦ୍ଧ ଜୀବ ଅଛନ୍ତି, ସମସ୍ତଙ୍କର ଏହି ଅବସ୍ଥା । ତେବେ ସାଧୁସଙ୍ଗ ଫଳରେ ଯେ ନିଜର ଏହି ଦୁର୍ଦ୍ଦୈବ କଥା ଉପଲବ୍ଧି କରିପାରିବ, ସେ ଶ୍ରୀଭଗବାନଙ୍କ ଶ୍ରୀପାଦପଦ୍ମରେ ବ୍ୟାକୁଳ ପ୍ରାର୍ଥନା ଜଣାଇବ । ଏହିପରି ପ୍ରାର୍ଥନାଦ୍ୱାରା ହିଁ ସେ ଭଗବାନଙ୍କ କୃପାଦୃଷ୍ଟି ଆକୃଷ୍ଟ କରିବାକୁ ସମର୍ଥ ହେବ । ବସ୍ତୁତଃ ଏହି ବ୍ୟାକୁଳ ପ୍ରାର୍ଥନା ହିଁ ଭକ୍ତି ବୋଲି ଶ୍ରୀଗୌରାନୁଗ ଗୋସ୍ୱାମୀମାନେ କହିଯାଇଛନ୍ତି । ଭଗବାନ୍ କୃପାର ମୂର୍ତ୍ତି । ତେଣୁ କୃପା କରିବା ତାଙ୍କର ସ୍ୱଭାବ, ଯେପରି ପୋଡ଼ିବା ଅଗ୍ନିର ଧର୍ମ । ଅଗ୍ନି ପୋଡ଼ିଦେଲା ବୋଲି କହିବା ଦ୍ୱାରା ଅଗ୍ନିର କୌଣସି ମାହାତ୍ମ୍ୟ ପ୍ରକାଶ ପାଉ ନାହିଁ । ଆମେ ଅଗ୍ନିକୁ ଯେପରି ବ୍ୟବହାର କରିବୁ ସେପରି ଫଳ ପାଇବୁ । ଅର୍ଥାତ୍ ତା' ସାହାଯ୍ୟରେ ଆମେ ଖାଦ୍ୟ ପ୍ରସ୍ତୁତ କରିପାରିବୁ, ଶୀତକଷ୍ଟରୁ ରକ୍ଷା ପାଇପାରିବୁ ଓ ଏହିପରି ଆମର ବହୁ ଉପକାରଜନକ କାର୍ଯ୍ୟରେ ତାକୁ ଲଗାଇ ପାରିବୁ । ତେଣୁ ଅଗ୍ନିର ବ୍ୟବହାରକାରୀ ଦ୍ୱାରା ଅଗ୍ନିର ମାହାତ୍ମ୍ୟ ପ୍ରକାଶ ପାଇଥାଏ । ସେହିପରି କୃପାମୟ ଭଗବାନଙ୍କର କୃପାଲାଭ କରିବା ଜୀବର ଦାୟିତ୍ୱ । **ଯେଉଁ ଜୀବ**

**ଯେତେ ବ୍ୟାକୁଳ ହୋଇ ତାଙ୍କୁ ଡାକିବ ଓ ତାଙ୍କ ଉଦ୍ଦେଶ୍ୟରେ ଯେତେ ସ୍ୱାର୍ଥ ତ୍ୟାଗ କରିପାରିବ ସେ ସେତେ ତାଙ୍କ ହୃଦୟକୁ ବିଗଳିତ କରାଇ ତହିଁରେ ତା' ପ୍ରତି ତାଙ୍କର କୃପାଭାବ ଜାତ କରାଇବ । ଏହା ହିଁ ତାଙ୍କ କୃପା ପାଇବାର ଏକମାତ୍ର ଉପାୟ ।** ଏ କଥା ଶାସ୍ତ୍ର ଓ ମହାଜନମାନେ ତାରସ୍ୱରରେ କୀର୍ତ୍ତନ କରିଛନ୍ତି । ଆଗରୁ ଯେପରି କହିଲି ଶ୍ରୀକୃଷ୍ଣଙ୍କ ସୁଖଚିନ୍ତା ହିଁ ଭକ୍ତି, ସେହିପରି ଶ୍ରୀକୃଷ୍ଣ ବା ତାଙ୍କ ଭକ୍ତଙ୍କ କୃପାଲାଭ ପାଇଁ ଯେଉଁ ବ୍ୟାକୁଳ ପ୍ରାର୍ଥନା, ତାହା ହିଁ ଭକ୍ତି । ଏ ବିଷୟରେ ଶ୍ରୀଜୀବପାଦ ଏହିପରି ଉଲ୍ଲେଖ କରିଛନ୍ତି– "ଭକ୍ତିର୍ହି ଭକ୍ତକୋଟିପ୍ରବିଷ୍ଟ-ତଦାର୍ଦ୍ରୀଭାବୟିତୃ-ତଚ୍ଛକ୍ତିବିଶେଷଃ । ଦୈନ୍ୟସମ୍ବନ୍ଧେନ ଚ ସାଧିକମୁଚ୍ଛଳିତା ଭବତୀତି ତତ୍ର ତଦାଧିକ୍ୟମ୍ । ତସ୍ମାଦ୍‌ଯା କୃପା ତସ୍ୟ ସତ୍‌ସୁ ବର୍ତ୍ତତେ, ସା ସତ୍‌ସଙ୍ଗବାହନୈବ ବା ସତ୍‌କୃପା-ବାହନୈବ ବା ସତୀ ଜୀବାନ୍ତରେ ସଂକ୍ରମତେ, ନ ସ୍ୱତନ୍ତ୍ରେତି ସ୍ଥିତମ୍ ।" (ପ୍ରୀ: ସ: ୬୫ ଅନୁ:)

ଅର୍ଥାତ୍ ଭକ୍ତବର୍ଗଙ୍କ ଚିତ୍ତରେ ପ୍ରବିଷ୍ଟ ଭଗବଚ୍ଛକ୍ତିବିଶେଷ ହିଁ ଭକ୍ତି । ଭକ୍ତର ଦୈନ୍ୟହେତୁ ଭଗବାନଙ୍କ ଚିତ୍ତରେ ତା' ପ୍ରତି କୃପା କରିବାର ଭାବ ଉଦିତ ହୋଇ ତାଙ୍କ ଚିତ୍ତକୁ ମଧ୍ୟ ବିଗଳିତ କରେ । ଦୈନ୍ୟସମ୍ବନ୍ଧବଶତଃ ଏହି ଭକ୍ତି ଅଧିକ ଉଚ୍ଛଳିତା ହୁଏ ବୋଲି ଦୈନ୍ୟଯୁକ୍ତ ଭକ୍ତଙ୍କ ମଧ୍ୟରେ ହିଁ ଭକ୍ତିର ଆଧିକ୍ୟ ଦେଖାଯାଏ । ଅତଏବ ଜୀବମାନଙ୍କ ପ୍ରତି ଭଗବାନଙ୍କର ଯେଉଁ କୃପା ହୋଇଥାଏ, ତାହା ସତ୍‌ସଙ୍ଗ ବା ସାଧୁଙ୍କ କୃପାକୁ ବାହନ କରି ଅନ୍ୟ ଜୀବଠାରେ ସଂକ୍ରାମିତ ହୁଏ, କେବେହେଲେ ସ୍ୱତନ୍ତ୍ରଭାବରେ ହୁଏ ନା ।

**ସୁବଳ–**ଭଗବାନଙ୍କର କେଉଁ ଶକ୍ତି ଭକ୍ତବର୍ଗଙ୍କ ଚିତ୍ତରେ ପ୍ରବେଶ କରେ ?

**ବାବାଜୀ ମହାରାଜ–**ଏହା ହ୍ଲାଦିନୀ ଶକ୍ତି, ଯାହା ନିତ୍ୟକାଳ ଭଗବାନଙ୍କ ଦ୍ୱାରା ଭକ୍ତବର୍ଗଙ୍କ ଚିତ୍ତକୁ ନିକ୍ଷିପ୍ତା ହୋଇ ତହିଁରେ ଭଗବତ୍‌ପ୍ରୀତିରୂପେ ଅବସ୍ଥାନ କରୁଛନ୍ତି । ଏହି ଶକ୍ତିକୁ ଆକର୍ଷଣ କରିବାର ଏକମାତ୍ର ଉପାୟ ଭକ୍ତିସାଧକର ବ୍ୟାକୁଳ କ୍ରନ୍ଦନ । ସାଧକର କ୍ରନ୍ଦନଦ୍ୱାରା ଆକୃଷ୍ଟ ହୋଇ ହ୍ଲାଦିନୀ ଶକ୍ତି ତା' ହୃଦୟରେ ପ୍ରବେଶ କରି ତାହାକୁ ଦୈନ୍ୟପୂର୍ଣ୍ଣ କରାନ୍ତି । ସେହି ଦୈନ୍ୟ ଓ ଆର୍ତ୍ତିଯୁକ୍ତ ହୋଇ ଯେଉଁ ସାଧକ ଯେତେ ଅଧିକ ବ୍ୟାକୁଳ କ୍ରନ୍ଦନ କରେ, ସେ ସେତେ ଭଗବାନଙ୍କ କୃପାଦୃଷ୍ଟି ଆକର୍ଷଣ କରିପାରେ । **ସୁତରାଂ ଭଗବାନଙ୍କ କୃପା ପାଇବା ପାଇଁ ଯେଉଁ ବ୍ୟାକୁଳ କ୍ରନ୍ଦନ, ତାହା ହିଁ ଭକ୍ତି ।** ଭକ୍ତର ଏହି ଆର୍ତ୍ତି ହ୍ଲାଦିନୀ ଶକ୍ତିଙ୍କ କୃପାରୁ ହିଁ ବୃଦ୍ଧି ହୋଇଥାଏ ।

ସୁତରାଂ କ୍ରନ୍ଦନ ଛଡ଼ା ଉପାୟ ନାହିଁ । ସେହି କାରଣରୁ ଶ୍ରୀଗୌରହରି ମଧ୍ୟ କହିଲେ–

"ନୟନଂ ଗଳଦଶ୍ରୁଧାରୟା ବଦନଂ ଗଦ୍‌ଗଦରୁଦ୍ଧୟା ଗିରା ।
ପୁଲକୈର୍ନିଚିତଂ ବପୁଃ କଦା ତବ ନାମଗ୍ରହଣେ ଭବିଷ୍ୟତି ॥"

ଅର୍ଥାତ୍ ହେ ଶ୍ରୀକୃଷ୍ଣ ! କେବେ ତୁମର ନାମ ଗ୍ରହଣ କରୁ କରୁ ମୋର ନୟନ ବିଗଳିତ ଅଶ୍ରୁଧାରାରେ ପରିପୂର୍ଣ୍ଣ ହେବ, ବଦନ ଗଦ୍‌ଗଦବାକ୍ୟରେ ରୁଦ୍ଧ ହେବ, ସମସ୍ତ ଦେହ ପୁଲକପରିପୂର୍ଣ୍ଣ ହେବ ? ଏପରି ଦିନ ମୋର କେବେ ହେବ ?

ଶ୍ରୀଗୌରହରି ତାଙ୍କର ଆଚରଣ ଓ ଶିକ୍ଷାଦ୍ୱାରା ଭକ୍ତିସାଧକର କ୍ରନ୍ଦନ ଉପରେ ହିଁ ସର୍ବାଧିକ ଗୁରୁତ୍ୱ ଦେଇଛନ୍ତି । ସେ ସ୍ୱୟଂ ଶ୍ରୀକୃଷ୍ଣ ହୋଇ ମଧ୍ୟ ଶ୍ରୀରାଧାଙ୍କ ଭାବରେ ସମ୍ପୂର୍ଣ୍ଣରୂପେ ବିଭାବିତ ହୋଇ ଶ୍ରୀଗୌରରୂପେ ରାଗମାର୍ଗୀୟ ଭକ୍ତି ନିଜେ ଆଚରଣ କରି ଶିକ୍ଷା ଦେଇଗଲେ । ତାଙ୍କରି ଶିକ୍ଷାରେ ଅନୁପ୍ରାଣିତ ହୋଇ ଷଡ଼ଗୋସ୍ୱାମୀମାନେ ନିଜ ଆଚରଣ ଓ ଶିକ୍ଷାରେ ମଧ୍ୟ ବ୍ୟାକୁଳ କ୍ରନ୍ଦନର ହିଁ ପ୍ରାଧାନ୍ୟ ଦେଖାଇଛନ୍ତି । ସୁତରାଂ ଶ୍ରୀଗୌରହରିଙ୍କୁ ସର୍ବଦା କାନ୍ଦି କାନ୍ଦି ଡାକିଲେ କୃଷ୍ଣଭଜନର ସ୍ୱରୂପ ଆମର ଉପଲବ୍ଧିର ବିଷୟ ହୋଇପାରିବ ।

**ସୁବଳ**—ଶାସ୍ତ୍ରରେ ତ ସବୁଠାରେ ଶ୍ରୀକୃଷ୍ଣଙ୍କ ଭଜନ କଥା କୁହାଯାଇଛି । ଆପଣ ସବୁବେଳେ ଶ୍ରୀଗୌରହରିଙ୍କ ଭଜନ କଥା କହୁଛନ୍ତି । ଏପରି କହିବାର କାରଣ କଅଣ କୃପା କରି ବୁଝାଇ ଦେଲେ କୃତାର୍ଥ ହୁଅନ୍ତି ।

## ଶ୍ରୀକୃଷ୍ଣ ଓ ଶ୍ରୀଗୌରଭଜନର ପାର୍ଥକ୍ୟ

**ବାବାଜୀ ମହାରାଜ**—ଶ୍ରୀକୃଷ୍ଣ ଓ ଶ୍ରୀଗୌର ଏ ଦୁହେଁ ସ୍ୱୟଂ ଭଗବାନ୍ । ଏ ଦୁହିଙ୍କ ମଧ୍ୟରେ ଏତିକି ପ୍ରଭେଦ ଯେ, ଶ୍ରୀକୃଷ୍ଣ ଈଶ୍ୱରଭାବ ନେଇ ଏ ଜଗତରେ ଅବତୀର୍ଣ୍ଣ ହୋଇଥିଲେ । ତାଙ୍କ ଅବତାରର କାରଣ ଶ୍ରୀମଦ୍ଭଗବଦ୍‌ଗୀତାରେ ଏହିପରି କୁହାଯାଇଛି—

"ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାମ୍ ।
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।।"

(ଶ୍ରୀଗୀତା: ୪।୮)

ଅର୍ଥାତ୍ ସାଧୁମାନଙ୍କ ପରିତ୍ରାଣ ଓ ଦୁଷ୍କର୍ମକାରୀମାନଙ୍କୁ ବିନାଶ କରିବା ପାଇଁ ମୁଁ (ଶ୍ରୀକୃଷ୍ଣ) ଯୁଗେ ଯୁଗେ ଅବତୀର୍ଣ୍ଣ ହୋଇଥାଏ ।

ଶ୍ରୀକୃଷ୍ଣ ଶ୍ରୀଗୀତାରେ ଶ୍ରୀଅର୍ଜୁନଙ୍କୁ ଯେଉଁସବୁ ଉପଦେଶ ଦେଇଥିଲେ, ତହିଁରେ ତାଙ୍କର ଈଶ୍ୱରତ୍ୱ ହିଁ ପରିପୂର୍ଣ୍ଣରୂପେ ପ୍ରକାଶିତ ହୋଇଛି ।

ତାହା ଏହିପରି—

"ଯତ୍ କରୋଷି ଯଦଶ୍ନାସି ଯଜ୍ଜୁହୋଷି ଦଦାସି ଯତ୍ ।
ଯତ୍ତପସ୍ୟସି କୌନ୍ତେୟ ତତ୍ କୁରୁଷ୍ୱ ମଦର୍ପଣମ୍ ।।"

(ଶ୍ରୀଗୀ: ୯।୨୭)

ଅର୍ଥାତ୍ ହେ ଅର୍ଜୁନ ! ତୁମେ ଯେଉଁ କର୍ମ କରୁଛ, ଯାହା ଭୋଜନ କରୁଛ, ଯେଉଁ ହବନ (ହୋମ) କରୁଛ, ଯେଉଁ ଦାନ ଦେଉଛ ଏବଂ ଯେଉଁ ତପସ୍ୟା କରୁଛ, ସେସବୁ ମୋତେ ଅର୍ପଣ କର ।

"ମନ୍ମନା ଭବ ମଦ୍ଭକ୍ତୋ ମଦ୍‌ଯାଜୀ ମାଂ ନମସ୍କୁରୁ ।
ମାମେବୈଷ୍ୟସି ସତ୍ୟଂ ତେ ପ୍ରତିଜାନେ ପ୍ରିୟୋଽସି ମେ ।।"

(ଶ୍ରୀଗୀ: ୧୮।୬୫)

ଅର୍ଥାତ୍ ତୁମେ ମୋଠାରେ ମନୋନିବେଶ କର, ମୋ ଭକ୍ତ ହୁଅ, ମୋ ପୂଜକ ହୁଅ ଏବଂ ମୋତେ ପ୍ରଣାମ କର । ଏହିପରି କଲେ ତୁମେ ମୋତେ ହିଁ ପାଇବ । ତୁମେ ମୋର ପ୍ରିୟ ହୋଇଥିବା ହେତୁ ମୁଁ ତୁମ ପାଖରେ ଏହି ସତ୍ୟ ପ୍ରତିଜ୍ଞା କରୁଛି ।

''ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।
ଅହଂ ତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ ।।''
(ଶ୍ରୀଗୀ: ୧୮।୬୬)

ଅର୍ଥାତ୍ ସମ୍ପୂର୍ଣ୍ଣ ଧର୍ମ ବା ସମ୍ପୂର୍ଣ୍ଣ କର୍ତ୍ତବ୍ୟ କର୍ମ ମୋଠାରେ ତ୍ୟାଗ କରି (ସମର୍ପଣ କରି) ତୁମେ କେବଳ ଏକମାତ୍ର ସର୍ବଶକ୍ତିମାନ୍ ସର୍ବାଧାର ପରମେଶ୍ୱର ମୋର ଶରଣ ନିଅ । ମୁଁ ତୁମକୁ ସମସ୍ତ ପାପରୁ ମୁକ୍ତ କରିବି । ତୁମେ ଶୋକ କରନା ।

ଶ୍ରୀକୃଷ୍ଣଙ୍କର ଉପର୍ଯ୍ୟୁକ୍ତ ଉପଦେଶରୁ ସେ ଯେ ଈଶ୍ୱରଭାବ ନେଇ ଆସିଥିଲେ, ତାହାର ପ୍ରମାଣ ମିଳେ । ସେ ଯେଉଁ ଉପଦେଶ ଦେଇଛନ୍ତି ତହିଁରେ କର୍ତ୍ତବ୍ୟବୁଦ୍ଧିରେ ଭକ୍ତି କରିବାକୁ କୁହାଯାଇ ଥିବାରୁ ତାହା ବୈଧୀ ଭକ୍ତି । ଏହି ବୈଧୀ ଭକ୍ତିର ସାଧନ କରିବାକୁ ସେ ଉପଦେଶ ଦେଇଛନ୍ତି ଏବଂ ଏହି ବୈଧୀ ଭକ୍ତି ସାଧନ କରି ସିଦ୍ଧି ଲାଭ କଲେ ବୈକୁଣ୍ଠରେ ଚତୁର୍ବିଧା ମୁକ୍ତି ମିଳିଥାଏ । ପୁଣି ସେ ଯେଉଁମାନଙ୍କୁ ହତ୍ୟା କରିଛନ୍ତି, ସେମାନଙ୍କୁ ସାଯୁଜ୍ୟ ମୁକ୍ତି ହିଁ ଦେଇଛନ୍ତି । ଏହିପରି ଶ୍ରୀକୃଷ୍ଣଙ୍କ ଭଜନରେ ମୁକ୍ତି ହିଁ ମିଳିଥାଏ । ତାଙ୍କ ପ୍ରକଟକାଳରେ ସେ କାହାକୁ ପ୍ରେମ ଦେଇ ନାହାନ୍ତି । ଶ୍ରୀମଦ୍ଭାଗବତର ନିମ୍ନ ବାକ୍ୟ ହିଁ ତାହାର ପ୍ରମାଣ ।

ରାଜନ୍ ପତିର୍ଗୁରୁରଲଂ ଭବତାଂ ଯଦୂନାଂ
ଦୈବଂ ପ୍ରିୟଃ କୁଳପତିଃ କ୍ୱ ଚ କିଙ୍କରୋ ବଃ ।
ଅସ୍ତ୍ୱେବମଙ୍ଗ ଭଗବାନ୍ ଭଜତାଂ ମୁକୁନ୍ଦୋ
ମୁକ୍ତିଂ ଦଦାତି କର୍ହିଚିତ୍ ସ୍ମ ନ ଭକ୍ତିଯୋଗମ୍ ।। (ଶ୍ରୀଭା: ୫।୬।୧୮)

ଅର୍ଥାତ୍ ହେ ମହାରାଜ ପରୀକ୍ଷିତ ! ଭଗବାନ୍ ଶ୍ରୀକୃଷ୍ଣ ଆପଣମାନଙ୍କର (ପାଣ୍ଡବମାନଙ୍କର) ଓ ଯଦୁମାନଙ୍କର ପାଳନକର୍ତ୍ତା, ଉପାସ୍ୟ, ବନ୍ଧୁ ଓ କୁଳର ନିୟାମକ ହୋଇଥିଲେ, ପୁଣି କେତେବେଳେ ବା ଦୂତରୂପରେ ଆପଣମାନଙ୍କର (ପାଣ୍ଡବମାନଙ୍କର) ଆଜ୍ଞାନୁବର୍ତ୍ତୀ କିଙ୍କରର କାର୍ଯ ମଧ୍ୟ କରିଥିଲେ । ଏହିପରି ହେଲେ ମଧ୍ୟ ଯେଉଁମାନେ ତାଙ୍କ ଭଜନ କରନ୍ତି ସେମାନଙ୍କୁ ସେ ମୁକ୍ତି ହିଁ ଦେଇଥାନ୍ତି, କିନ୍ତୁ କେତେବେଳେ ହେଲେ କାହାକୁ ଭକ୍ତିଯୋଗ ବା ପ୍ରେମ ଦିଅନ୍ତି ନାହିଁ । ସେ ଈଶ୍ୱରଭାବ ନେଇ ଅବତୀର୍ଣ୍ଣ ହୋଇଥିବାରୁ ଯେଉଁମାନଙ୍କୁ ହତ୍ୟା କରିଛନ୍ତି, ସେମାନଙ୍କୁ ସାଯୁଜ୍ୟ ମୁକ୍ତି ଦେଇଛନ୍ତି । ସେ ମୁଖ୍ୟତଃ ବୈଧୀ ଭକ୍ତି କଥା ହିଁ ଶିକ୍ଷା ଦେଇ ଯାଇଛନ୍ତି । ତାଙ୍କ ଶିକ୍ଷାନୁଯାୟୀ ବୈଧୀ ଭକ୍ତିର ସାଧନ କଲେ ବୈକୁଣ୍ଠରେ ପ୍ରେମସେବୋତ୍ତରା ମୁକ୍ତି ମିଳିଥାଏ ।

ସେହି ଶ୍ରୀକୃଷ୍ଣ ଏହି କଳିଯୁଗରେ ଯେତେବେଳେ ଶ୍ରୀଗୌରରୂପେ ଅବତୀର୍ଣ୍ଣ ହେଲେ ତା' ପୂର୍ବରୁ ସେ ଗୋଲୋକରେ ଯାହା ଚିନ୍ତା କରିଥିଲେ ସେ ସମ୍ବନ୍ଧରେ ଶ୍ରୀଚୈତନ୍ୟଚରିତାମୃତରେ ଏହିପରି ଉଲ୍ଲିଖିତ ହୋଇଛି–

"ଯଥେଚ୍ଛ ବିହରି କୃଷ୍ଣ କରେ ଅନ୍ତର୍ଧାନ ।
ଅନ୍ତର୍ଧାନ କରି ମନେ କରେ ଅନୁମାନ ॥
ଚିରକାଳ ନାହି କରି ପ୍ରେମଭକ୍ତିଦାନ ।
ଭକ୍ତିବିନା ଜଗତେର ନାହି ଅବସ୍ଥାନ ॥
ସକଳ ଜଗତେ ମୋରେ କରେ ବିଧିଭକ୍ତି ।
ବିଧିଭକ୍ତ୍ୟେ ବ୍ରଜଭାବ ପାଇତେ ନାହି ଶକ୍ତି ॥
ଐଶ୍ୱର୍ଯଜ୍ଞାନେତେ ସବ ଜଗତ ମିଶ୍ରିତ ।
ଐଶ୍ୱର୍ଯଶିଥିଲ ପ୍ରେମେ ନାହି ମୋର ପ୍ରୀତ ॥
ଐଶ୍ୱର୍ଯଜ୍ଞାନେ ବିଧି-ଭଜନ କରିୟା ।
ବୈକୁଣ୍ଠେତେ ଯାୟ ଚତୁର୍ବିଧମୁକ୍ତି ପାୟା ॥
ଯୁଗଧର୍ମ ପ୍ରବର୍ତ୍ତାଇମୁ ନାମସଂକୀର୍ତ୍ତନ ।
ଚାରିଭାବ ଭକ୍ତି ଦିୟା ନାଚାଇମୁ ଭୁବନ ॥"

(ଶ୍ରୀଚୈ:ଚ: ୧।୩।୧୧-୧୬)

ଅର୍ଥାତ୍ ଶ୍ରୀକୃଷ୍ଣ ଯଥେଚ୍ଛ ବିହାର କରି ଅନ୍ତର୍ଧାନ କଲା ପରେ ଗୋଲୋକ ଧାମରେ ମନେ ମନେ ଚିନ୍ତା କଲେ–ମୁଁ ତ ବହୁଦିନୁ ଜଗଦ୍‌ବାସୀଙ୍କୁ ପ୍ରେମଭକ୍ତି ଦେଇ ନାହିଁ । ବହୁକାଳପୂର୍ବେ ଯେତେବେଳେ ଗୌରରୂପେ ଅବତୀର୍ଣ୍ଣ ହୋଇଥିଲି, ସେତେବେଳେ ଯେଉଁ ପ୍ରେମଭକ୍ତି ଦେଇଥିଲି, କାଳପ୍ରଭାବରେ ତାହା ପ୍ରାୟ ବିଲୁପ୍ତ ହୋଇଯାଇଛି । ପ୍ରେମଭକ୍ତି ବ୍ୟତୀତ ଜୀବର ଆତ୍ୟନ୍ତିକ ମଙ୍ଗଳଲାଭର ଅନ୍ୟ ରାସ୍ତା ମଧ୍ୟ ନାହିଁ । ଅବଶ୍ୟ ଜଗତରେ ଯେ ଭକ୍ତି ଏକବାରେ ନାହିଁ, ତାହା ନୁହେଁ । ତେବେ ଯେଉଁ ଭକ୍ତି ପ୍ରଚଳିତ ଅଛି, ତାହା ବୈଧୀ ଭକ୍ତି । ବ୍ରଜବାସୀମାନଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଯେଉଁ ଐକାନ୍ତିକୀ ଭକ୍ତି, ତାହା ହେଲା ରାଗମୟୀ ଭକ୍ତି । କେବଳ ଶ୍ରୀକୃଷ୍ଣଙ୍କ ସୁଖ ପାଇଁ ତାଙ୍କୁ ଭଲ ପାଇବା ସେହି ଭକ୍ତିର ଲକ୍ଷଣ । ତହିଁରେ ନିଜର କୌଣସିପ୍ରକାର ସୁଖବାଞ୍ଛା ଏପରିକି ମୁକ୍ତିବାଞ୍ଛା ପର୍ଯ୍ୟନ୍ତ ନାହିଁ, ସର୍ବାବସ୍ଥାରେ କେବଳ ଅଛି ଶ୍ରୀକୃଷ୍ଣଙ୍କ ସୁଖଚିନ୍ତା । ବ୍ରଜବାସୀମାନଙ୍କ ମଧ୍ୟରେ ଶ୍ରୀରାଧାରାଣୀଙ୍କ ଶ୍ରୀକୃଷ୍ଣଙ୍କ ସୁଖ ଉଦ୍ଦେଶ୍ୟରେ ସ୍ୱାର୍ଥତ୍ୟାଗ ହେଲା ସର୍ବାଧିକ ।

ସୁବଳ, ଚିନ୍ତା କର, ଏହି ବ୍ରଜବାସୀମାନଙ୍କର ବିଶେଷଭାବରେ ଶ୍ରୀରାଧାରାଣୀଙ୍କର କି ନିଃସ୍ୱାର୍ଥ ପ୍ରେମ ! ଏହିପ୍ରକାର ପ୍ରେମରେ କର୍ତ୍ତୁମକର୍ତ୍ତୁମନ୍ୟଥାକର୍ତ୍ତୁଂ ସମର୍ଥଃ ଭଗବାନ୍ ଶ୍ରୀକୃଷ୍ଣ କଅଣ ବଶୀଭୂତ ନ ହୋଇ ରହିପାରିବେ ? ଯାହା ପ୍ରେମରେ ଭଗବାନ୍ ବଶୀଭୂତ ହେଲେ, ତାହାର ଆଉ କଅଣ ଅଲଭ୍ୟ ରହିଲା ?

ଏବେ ଶ୍ରୀକୃଷ୍ଣ କଅଣ ଚିନ୍ତା କଲେ ଶୁଣ । ବ୍ରଜବାସୀମାନଙ୍କର ତାଙ୍କ ପ୍ରତି ଯେଉଁ ଅନାବିଳ ପ୍ରେମ ତାହା ତ ବୈଧୀ ଭକ୍ତିରେ ମିଳିପାରିବ ନାହିଁ । ଏହା କେବଳ ରାଗମୟୀ ଭକ୍ତିରେ ହିଁ ମିଳିପାରିବ । କିନ୍ତୁ ରାଗମୟୀ ଭକ୍ତି ଜଗତରେ ଦୁର୍ଲ୍ଲଭ ।

**ସୁବଳ**—ରାଗମୟୀ ଭକ୍ତି ଯେତେବେଳେ ଗୋଟିଏ ପ୍ରକାର ସାଧନ ପନ୍ଥା, ତାହା ଜଗତରେ ଦୁର୍ଲ୍ଲଭ କାହିଁକି ?

**ବାବାଜୀ ମହାରାଜ**—ଏହା ଗୋଟିଏ ଜଟିଳ ପ୍ରଶ୍ନ । ଏହାର ଉତ୍ତର ସାଧାରଣ ଲୋକେ ବୁଝିପାରିବେ ନାହିଁ । ଯେଉଁମାନଙ୍କ ପ୍ରତି ପୂର୍ବ ମହତ୍‌କୃପା ଅଛି, କେବଳ ସେହିମାନେ ହିଁ ଏହା ବୁଝିପାରିବେ । ତୁମ ପ୍ରତି ଯେତେବେଳେ ପୂର୍ବ ମହତ୍‌କୃପା ଅଛି, ତୁମେ ଅବଶ୍ୟ ଏହା ବୁଝିପାରିବ ।

## ବୈଧୀ ଓ ରାଗମୟୀ ଭକ୍ତିର ପାର୍ଥକ୍ୟ

ବର୍ତ୍ତମାନ ବୈଧୀ ଭକ୍ତି ଓ ରାଗମୟୀ ଭକ୍ତିରେ କଅଣ ପାର୍ଥକ୍ୟ ତାହା କହୁଛି ଶୁଣ । ଶାସ୍ତ୍ରବିଧିଚାଳିତ ହୋଇ ଯେଉଁ ଭକ୍ତି କରାଯାଏ ତାହାକୁ ବୈଧୀ ଭକ୍ତି କୁହାଯାଏ । ଅର୍ଥାତ୍ ଏହିପରି ଭକ୍ତି କରିବା ବିଧି । ଏହା ନ କଲେ ଅମଙ୍ଗଳ ହେବ । ଅମଙ୍ଗଳ ଅର୍ଥ ନିଜର କ୍ଷତି ଅର୍ଥାତ୍ ନରକଲାଭ ହେବ । ପୁଣି ଏହି ବୈଧୀ ଭକ୍ତିର ଶେଷଫଳ ହେଲା ବୈକୁଣ୍ଠର ଚତୁର୍ବିଧମୁକ୍ତିଲାଭ ।

ସୁବଳ, ଲକ୍ଷ୍ୟ କର, ଏଠାରେ ଭକ୍ତିର ଫଳ କିଏ ପାଇଲା ?

**ସୁବଳ**—ଆଜ୍ଞା, ଭକ୍ତିର ଫଳ ଭକ୍ତ ତା' ମୁକ୍ତିରୂପେ ନିଜେ ପାଇଲା ।

**ବାବାଜୀ ମହାରାଜ**—ହଁ, ଠିକ୍ କହିଲ । ତାହାହେଲେ ଏହା ଭକ୍ତି ହେଲେ ମଧ୍ୟ ସଂପୂର୍ଣ୍ଣ ନିଃସ୍ୱାର୍ଥ ନୁହେଁ । ଏଥିରେ ସାଧକର ସ୍ୱାର୍ଥପରତା ଅଛି । ରଜସ୍ତମୋଗୁଣାବିଷ୍ଟ ଜୀବ ସଂପୂର୍ଣ୍ଣ ନିଃସ୍ୱାର୍ଥ ହୋଇ ଭକ୍ତି କରିବା ମଧ୍ୟ ଅସମ୍ଭବ । ସେହି ହେତୁରୁ ଶ୍ରୀକୃଷ୍ଣାବତାରରେ ସେ ବୈଧୀ ଭକ୍ତି ବିଷୟ ହିଁ ଜଗତକୁ ଶିକ୍ଷା ଦେଇଯାଇଛନ୍ତି ।

ଏବେ ରାଗମୟୀ ଭକ୍ତି କଥା କହୁଛି ଶୁଣ । ଏହା ସମ୍ପୂର୍ଣ୍ଣ ନିଃସ୍ୱାର୍ଥ । କେବଳ ଯାହା ପ୍ରତି ପୂର୍ବ ମହତ୍‌କୃପା ଅଛି, ସେ ଏହି ଜନ୍ମରେ ଭଗବଦିଚ୍ଛାରେ ପୁଣି ରାଗମାର୍ଗୀୟ ଭକ୍ତଙ୍କ ସଙ୍ଗ ପାଇଲେ ସେହି ସଙ୍ଗ ପ୍ରଭାବରେ ହିଁ ତାର ସମ୍ପୂର୍ଣ୍ଣ ସ୍ୱାର୍ଥ ତ୍ୟାଗ କରି କେବଳ ଶ୍ରୀକୃଷ୍ଣଙ୍କ ପ୍ରୀତି ଉଦ୍ଦେଶ୍ୟରେ ତାଙ୍କୁ ଭକ୍ତି କରିପାରିବ । ସାଧନ ପ୍ରଭାବରେ ତା' ହୃଦୟରୁ ଅନ୍ୟ ସମସ୍ତ ଦୁର୍ବାସନା ଦୂର ହୋଇ କେବଳ ଶ୍ରୀକୃଷ୍ଣଙ୍କ ପ୍ରତି ମମତ୍ୱବୋଧ ଅନୁକ୍ଷଣ ବଳବତ୍ତର ହେଲେ, ତାହାକୁ ହିଁ ପ୍ରେମ କୁହାଯାଏ । ଅବଶ୍ୟ ଏହି ଭକ୍ତି ହ୍ଲାଦିନୀ ଶକ୍ତିର ହିଁ ବୃତ୍ତି ।

ସାଧନକାଳୀନ ବ୍ୟାକୁଳ କ୍ରନ୍ଦନଦ୍ୱାରା ହ୍ଲାଦିନୀ ଶକ୍ତିଙ୍କ କୃପାଦୃଷ୍ଟି ସାଧକ ପ୍ରତି ଆକୃଷ୍ଟ ହୁଏ ଓ ସେ ତତ୍‌କ୍ଷଣାତ୍ ତା ହୃଦୟରେ ପ୍ରବେଶ କରି ଶ୍ରୀକୃଷ୍ଣଙ୍କ ଐକାନ୍ତିକ ସୁଖଚିନ୍ତା ତହିଁରେ ସଞ୍ଚାର କରନ୍ତି । ତେବେ ଯାଇ ସେ ରାଗମୟୀ ଭକ୍ତି କରିବାର ଅଧିକାର ପାଏ ।

ଏଥିରୁ ଜଣାଯାଉଛି ଯେ, ରାଗମୟୀ ଭକ୍ତି କେବଳ ସାଧକର ବ୍ୟାକୁଳ କ୍ରନ୍ଦନସାପେକ୍ଷ । ଯେହେତୁ ଏହା ସମ୍ପୂର୍ଣ୍ଣରୂପେ ଜୀବଚେଷ୍ଟାର ବହିର୍ଭୂତ । କେବଳ ଶ୍ରୀକୃଷ୍ଣଙ୍କ ସୁଖ ପାଇଁ ତାଙ୍କୁ ଭକ୍ତି କରିବା କଥା ସାଧାରଣ ଜୀବର ଧାରଣାର ଅତୀତ । ତେଣୁ ସେ ଏ ପ୍ରକାର ଭକ୍ତିରେ ପ୍ରବୃତ୍ତ ହେବ ବା କିପରି ?

ଏହି ଭକ୍ତିର ସ୍ୱରୂପ ବିଷୟରେ ଶ୍ରୀରୂପପାଦ ତାଙ୍କ ରଚିତ ଶ୍ରୀଭକ୍ତିରସାମୃତସିନ୍ଧୁରେ ଏହିପରି ଉଲ୍ଲେଖ କରିଛନ୍ତି—

"ଅନନ୍ୟମମତା ବିଷ୍ଣୌ ମମତା ପ୍ରେମସଙ୍ଗତା
ଭକ୍ତିରିତ୍ୟୁଚ୍ୟତେ ଭୀଷ୍ମ-ପ୍ରହ୍ଲାଦୋଦ୍ଧବ-ନାରଦୈଃ ॥"

(ଶ୍ରୀଭ:ର:ସି: ୧।୪।୨)

ଅର୍ଥାତ୍ ଅନ୍ୟ କୌଣସି ବିଷୟ (ନିଜର ଧର୍ମ, ଅର୍ଥ, କାମ ବା ମୋକ୍ଷ) ପ୍ରତି ଲେଶମାତ୍ର ମମତା ନ ରଖି କେବଳ ଶ୍ରୀକୃଷ୍ଣଙ୍କ ସୁଖ ପାଇଁ ତାଙ୍କୁ ଯେଉଁ ପ୍ରୀତି କରାଯାଏ, ତାହା ହିଁ ରାଗମୟୀ ଭକ୍ତି । ତହିଁରେ ସିଦ୍ଧିଲାଭ କଲେ ସାଧକ ପ୍ରେମ ପାଇଥାଏ । ପ୍ରେମ ଅର୍ଥ ଶ୍ରୀକୃଷ୍ଣଙ୍କ ଐକାନ୍ତିକ ସୁଖବିଧାନବାସନା । ଅର୍ଥାତ୍ ସେ ସାଧନକାଳରେ ଯାହା ଭାବୁଥିଲା, ସିଦ୍ଧାବସ୍ଥାରେ ତାହା ହିଁ ପାଇଲା ।

ଏହିପ୍ରକାର ଭକ୍ତି କେବଳ ସେହି ଜାତୀୟ ମହତଙ୍କ କୃପାର ହିଁ ଫଳ । ଏହା ଆଦୌ ଜୀବର ଚେଷ୍ଟାସାଧ୍ୟ ନୁହେଁ । ଏହି ଜାତୀୟ ମହତଙ୍କ କୃପା ଯେ ପାଇଛି, ସେ ମହାଭାଗ୍ୟବାନ୍ । ଏହିପ୍ରକାର ଭାଗ୍ୟବାନ୍ ସାଧକଙ୍କ ସଂଖ୍ୟା ଅତି ବିରଳ । ତେଣୁ ଏହିପ୍ରକାର ନିଃସ୍ୱାର୍ଥ ଭକ୍ତଙ୍କ ସଂଖ୍ୟା ମଧ୍ୟ ବିରଳ ।

ଏହି ଦୁର୍ଲଭ ବସ୍ତୁକୁ ଶ୍ରୀକୃଷ୍ଣ ତାଙ୍କ ଗୌରାବତାରରେ ଅତି ସୁଲଭ କରି ଦେଇ ଗଲେ । ସେ କିଛି ବିଚାର ନ କରି ପାପୀ, ତାପୀ, ଅପରାଧୀ, ସମସ୍ତଙ୍କୁ ଏହି ରାଗମୟୀ ଭକ୍ତିର ପ୍ରେମରୂପକ ଫଳ ଦେଇଗଲେ । କାହାରି ସାଧନର ଅପେକ୍ଷା କଲେ ନାହିଁ । ଶ୍ରୀକୃଷ୍ଣ ସମସ୍ତଙ୍କୁ ବୈଧୀ ଭକ୍ତିର ସାଧନ କରିବାକୁ ଶିକ୍ଷା ଦେଇଛନ୍ତି ଏବଂ ସେହି ସାଧନରେ ସିଦ୍ଧିଲାଭ ପରେ ବୈକୁଣ୍ଠରେ ଚତୁର୍ବିଧା ମୁକ୍ତି ମିଳିଥାଏ । କିନ୍ତୁ ଶ୍ରୀଗୌର ଜୀବର ସାଧନକୁ ଅପେକ୍ଷା ନ କରି କେବଳ ତାଙ୍କ ଦର୍ଶନ ପ୍ରଭାବରେ ହିଁ ସମସ୍ତଙ୍କୁ ପ୍ରେମ ଦେଇଗଲେ । **ଏହା ହିଁ ଶ୍ରୀଗୌରସ୍ୱରୂପର ପରମୋଦାରତା ଓ ମହାବଦାନ୍ୟତା ।** ଶ୍ରୀଗୌରହରିଙ୍କର ଏହି କରୁଣା କଥା ଚିନ୍ତାର ଅତୀତ । ସେହି ହେତୁରୁ ତାଙ୍କୁ ମହାବଦାନ୍ୟ ବୋଲି ଶ୍ରୀରୂପପ୍ରଭୁ ବର୍ଣ୍ଣନା କରିଛନ୍ତି ।

ସୁବଳ, ରାଗମୟୀ ଭକ୍ତି କାହିଁକି ଦୁର୍ଲ୍ଲଭ ବର୍ତ୍ତମାନ ବୁଝିଲ ତ ?

**ସୁବଳ**—ଆଜ୍ଞା, ଆପଣଙ୍କ କୃପାରୁ ଭଲଭାବରେ ବୁଝିପାରିଛି ଏବଂ ଏହିପ୍ରକାର ସାଧକ ଯେ ଜଗତରେ ବିରଳ ହେବେ, ଏହା ମଧ୍ୟ ଉପଲବ୍ଧି କରିପାରୁଛି ।

## ବୈଧୀଭକ୍ତିର ଶିକ୍ଷକ ଶ୍ରୀକୃଷ୍ଣ ହିଁ ରାଗମାର୍ଗର ପ୍ରବର୍ତ୍ତକ ଶ୍ରୀଗୌର

**ବାବାଜୀ ମହାରାଜ**—ଶ୍ରୀରାଧାରାଣୀ କି ଭାବରେ ତାଙ୍କର ସମସ୍ତ ସୁଖକୁ ଜଳାଞ୍ଜଳି ଦେଇ କେବଳ ଶ୍ରୀକୃଷ୍ଣଙ୍କ ସୁଖଚିନ୍ତାରେ ସର୍ବକ୍ଷଣ ବିଭୋର ହୋଇ ରହୁଥିଲେ ସେହି କଥା ଚିନ୍ତା କରୁ କରୁ ଶ୍ରୀକୃଷ୍ଣ ଶ୍ରୀରାଧାରାଣୀଙ୍କ ଭାବରେ ଏପରି ନିମଜ୍ଜିତ ହୋଇଗଲେ ଯେ, ସେ ଯେ ସ୍ୱୟଂ ଶ୍ରୀକୃଷ୍ଣ, ତାହା ସମ୍ପୂର୍ଣ୍ଣ ଭୁଲି ଯାଇ ଶ୍ରୀରାଧାଙ୍କ ଭାବରେ ପୂରାପୂରି ବିଭାବିତ ହୋଇ ରହିଲେ । ସେହି ଭାବାବେଶ ନେଇ ଶ୍ରୀକୃଷ୍ଣ ଶ୍ରୀରାଧାଙ୍କ ଭାବ ଅର୍ଥାତ୍ ଭକ୍ତଭାବ ଓ ଗୌରକାନ୍ତି ଧାରଣ କରି ଶ୍ରୀଗୌରରୂପରେ ଏ ଜଗତରେ ଗତ ସାଢ଼େ ପାଞ୍ଚ ଶହ ବର୍ଷ ପୂର୍ବେ ଆବିର୍ଭୂତ ହୋଇଥିଲେ ।

ଜଗଦ୍‌ବାସୀଙ୍କୁ କେବଳ ବ୍ରଜବାସୀମାନଙ୍କର ରାଗମୟୀ ଭକ୍ତି ଶିକ୍ଷା ଦେବା ପାଇଁ ହିଁ ଶ୍ରୀକୃଷ୍ଣ ଶ୍ରୀଗୌରାବତାର ଗ୍ରହଣ କରିଥିଲେ । ଶ୍ରୀକୃଷ୍ଣାବତାରରେ ଯିଏ ବୈଧୀ ଭକ୍ତି ଶିକ୍ଷା ଦେଇଗଲେ, ସେହି ଶ୍ରୀକୃଷ୍ଣ ହିଁ ତାଙ୍କ ଗୌରାବତାରରେ ଶ୍ରୀରାଧାରାଣୀଙ୍କ ଭାବ ଅଙ୍ଗୀକାର କରି ନିଜେ ଭକ୍ତରୂପେ ଆଚରଣ କରି ଜଗଦ୍‌ବାସୀଙ୍କୁ ରାଗମାର୍ଗୀୟ ଭକ୍ତିସାଧନର ପଥ ଶିକ୍ଷା ଦେଇଗଲେ । କାରଣ ଭକ୍ତଭାବ ଅଙ୍ଗୀକାର ନ କଲେ ଈଶ୍ୱରଭାବଦ୍ୱାରା ରାଗମାର୍ଗୀୟ ଭକ୍ତି ଜୀବଙ୍କୁ ଶିକ୍ଷା ଦେଇ ହେବ ନାହିଁ ।

ସେହି ହେତୁରୁ ସେ ଚିନ୍ତା କଲେ—

ଆପନି କରିବ ଭକ୍ତଭାବ ଅଙ୍ଗୀକାରେ ।
ଆପନି ଆଚରି ଭକ୍ତି ଶିଖାଇମୁ ସଭାରେ ।।

(ଶ୍ରୀଚୈ:ଚ: ୧।୩।୧୮)

ଯୁଗଧର୍ମ ପ୍ରବର୍ତ୍ତନ ହୟ ଅଂଶ ହୈତେ ।
ଆମି ବିନା ଅନ୍ୟେ ନାରେ ବ୍ରଜପ୍ରେମ ଦିତେ ।।''

(ଶ୍ରୀଚୈ:ଚ: ୧।୩।୨୦)

ମୁଁ ଏବେ ଭକ୍ତଭାବ ନେଇ ଅବତୀର୍ଣ୍ଣ ହୋଇ ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର ଏହି ଚାରିଭାବର ରାଗମୟୀ ଭକ୍ତିରେ ଜଗଦ୍‌ବାସୀଙ୍କୁ ଉଦ୍‌ବୁଦ୍ଧ କରି ପ୍ରେମରେ ନଚାଇବି । ମୋର ଅଂଶାବତାରମାନେ ଯୁଗଧର୍ମ ଶିକ୍ଷା ଦେଇଥାନ୍ତି । ସ୍ୱୟଂରୂପ ମୋ ବ୍ୟତୀତ ଅନ୍ୟ କୌଣସି ଅଂଶାବତାର ବ୍ରଜପ୍ରେମ ଦେଇ ପାରିବେ ନାହିଁ । ଏଠାରେ ସେ ଯେ ଯୁଗଧର୍ମ ପ୍ରବର୍ତ୍ତନ କରିବେ ବୋଲି ଚିନ୍ତା କଲେ, ଏହାର ତାତ୍ପର୍ଯ୍ୟ ଏହି ଯେ, ସେ ଅବତୀର୍ଣ୍ଣ ହେବା ସଙ୍ଗେ ସଙ୍ଗେ ସବୁ ଅଂଶାବତାରମାନେ ମଧ୍ୟ ତାଙ୍କ ସଙ୍ଗେ ମିଳିତ ହୋଇଥିଲେ ଏବଂ ସେହିମାନଙ୍କ ଦ୍ୱାରା ସେ ଯୁଗଧର୍ମ ପ୍ରଚାର କରାଇଥିଲେ ।

''ତାହାତେ ଆପନ ଭକ୍ତଗଣ କରି ସଙ୍ଗେ ।
ପୃଥିବୀତେ ଅବତରି କରିମୁ ନାନା ରଙ୍ଗେ ।।

ଏତ ଭାବି କଲିକାଲ ପ୍ରଥମ ସନ୍ଧ୍ୟାୟ ।
ଅବତୀର୍ଣ୍ଣ ହୈଲା କୃଷ୍ଣ ଆପନି ନଦୀୟାୟ ॥''

(ଶ୍ରୀଚୈ:ଚ: ୧।୩।୨୧-୨୨)

ଏହି ଚିନ୍ତା କରି ଶ୍ରୀକୃଷ୍ଣ ତାଙ୍କ ଭକ୍ତମାନଙ୍କୁ ନେଇ କଳିର ପ୍ରଥମ ସନ୍ଧ୍ୟାରେ ଅର୍ଥାତ୍ ପ୍ରଥମ ଭାଗରେ ନଦୀୟାରେ ଶ୍ରୀଚୈତନ୍ୟରୂପେ ଅବତୀର୍ଣ୍ଣ ହେଲେ ।

**ସୁବଳ**—ତାହାହେଲେ ଯେ ଶ୍ରୀକୃଷ୍ଣ, ସେ ହିଁ ତ ଶ୍ରୀଗୌର?

**ବାବାଜୀ ମହାରାଜ**—ଅବଶ୍ୟ । ଯେଉଁ ଶ୍ରୀକୃଷ୍ଣ ଦ୍ୱାପରଯୁଗରେ ଈଶ୍ୱରଭାବ ନେଇ ସାଧୁମାନଙ୍କ ପରିତ୍ରାଣ ଓ ଦୁଷ୍କୃତମାନଙ୍କ ବିନାଶ ପାଇଁ ଏ ବ୍ରହ୍ମାଣ୍ଡରେ ଅବତୀର୍ଣ୍ଣ ହୋଇଥିଲେ ଏବଂ ସମସ୍ତଙ୍କୁ ବୈଧୀ ଭକ୍ତି ସାଧନ କରିବାକୁ ଶିକ୍ଷା ଦେଇଗଲେ, ସେହି ଶ୍ରୀକୃଷ୍ଣ ହିଁ ତାଙ୍କର ସର୍ବଶ୍ରେଷ୍ଠ ଆରାଧିକା ଶ୍ରୀରାଧାରାଣୀଙ୍କ ଭାବ ଓ ଗୌରକାନ୍ତି ଅଙ୍ଗୀକାର କରି ଏହି କଳିରେ ଭକ୍ତଭାବ ନେଇ ଅବତୀର୍ଣ୍ଣ ହୋଇଥିଲେ । ତେଣୁ ଶ୍ରୀକୃଷ୍ଣ ଯିଏ ଶ୍ରୀଗୌର ମଧ୍ୟ ସିଏ । ଏ ଦୁହିଙ୍କ ସ୍ୱରୂପରେ କୌଣସି ଭେଦ ନାହିଁ । ତେବେ ତାଙ୍କ ଶିକ୍ଷାରେ ପ୍ରଭେଦ ଅଛି । ଶ୍ରୀକୃଷ୍ଣ ଈଶ୍ୱରଭାବ ନେଇ ଜଗଦ୍‌ବାସୀଙ୍କ ଅଧିକାରକୁ ଲକ୍ଷ୍ୟ କରି ସେମାନଙ୍କୁ ବୈଧୀ ଭକ୍ତି ସାଧନ କରିବାକୁ ଶିକ୍ଷା ଦେଇଗଲେ । ଶ୍ରୀଗୌର କିନ୍ତୁ ଭକ୍ତଭାବ ଧରି ସମସ୍ତଙ୍କୁ ଶ୍ରୀରାଗମାର୍ଗୀୟ ଭକ୍ତି କରିବାକୁ ଅର୍ଥାତ୍ ନିଜର କୌଣସି ଲାଭ ଆଶା ନ ରଖି କେବଳ ତାଙ୍କ ସୁଖ ପାଇଁ ତାଙ୍କୁ ଭକ୍ତି କରିବାକୁ ଶିକ୍ଷା ଦେଇଗଲେ।

ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ୍ ହୋଇ ମଧ୍ୟ ତାଙ୍କ ଗୌରାବତାରରେ ଯେଉଁ ଶିକ୍ଷା ଦେଇଗଲେ ଓ ଯେପରି ଆଚରଣ କରିଗଲେ ତାହା ଚିନ୍ତା କଲେ ହୃଦୟ ବିସ୍ମୟରେ ଭରି ଉଠେ ।

**ସୁବଳ**—ଶ୍ରୀଗୌରାବତାରରେ କି ଅଦ୍ଭୁତ ଆଚରଣ ସେ କଲେ ?

**ବାବାଜୀ ମହାରାଜ**—ସେ ଯାହାକୁ ଦେଖିଲେ, ସେ ମନୁଷ୍ୟ ହେଉ, ପଶୁପକ୍ଷୀ ହେଉ କିଂବା ବୃକ୍ଷଲତା ହେଉ ଦର୍ଶନମାତ୍ରେ ବିନା ସାଧନରେ ତାକୁ ପ୍ରେମ ଦେଇଗଲେ । ତାଙ୍କ ଅବତାରକାଳରେ କେହି ସାଧନ କରି ପ୍ରେମ ପାଇବାର ଦୃଷ୍ଟାନ୍ତ ନାହିଁ । ସେ ଝାଡ଼ଖଣ୍ଡ ଜଙ୍ଗଲବାଟେ ଚାଲି ଚାଲି ଯେତେବେଳେ ପୁରୀରୁ ବୃନ୍ଦାବନ ଯାଉଥିଲେ, ସେତେବେଳେ ସେଠାରେ ବାଘ, ହରିଣ, ସାପ ଓ ବୃକ୍ଷଲତା ଇତ୍ୟାଦିଙ୍କୁ ଦର୍ଶନମାତ୍ରେ ପ୍ରେମ ଦେଇଥିଲେ । ଯେଉଁ ହରିଣ ବାଘର ଖାଦ୍ୟ, ସେହି ହରିଣ ଓ ବାଘ 'କୃଷ୍ଣ କୃଷ୍ଣ' ଉଚ୍ଚାରଣ କରି ପରସ୍ପରକୁ ଆଲିଙ୍ଗନ ଓ ଚୁମ୍ବନ କରୁ କରୁ ଶ୍ରୀଗୌରହରିଙ୍କ ସଙ୍ଗେ ସଙ୍ଗେ ଯାଉଥିଲେ ।

ସୁବଳ, ଚିନ୍ତା କଲ, କି ଅପୂର୍ବ ସେ ଦୃଶ୍ୟ !

**ସୁବଳ**—ଆଜ୍ଞା, ସେ କଥା ଚିନ୍ତା କଲାବେଳକୁ ତ ମୋ ଲୋମ ଟାଙ୍କୁରି ଉଠୁଛି ।

## ଶ୍ରୀଗୌର ହିଁ ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ

**ବାବାଜୀ ମହାରାଜ**—ମହାଭାରତ ବିଷ୍ଣୁସହସ୍ରନାମସ୍ତୋତ୍ରରେ ଏହିପରି ବର୍ଣ୍ଣିତ ହୋଇଛି—

ସୁବର୍ଣ୍ଣବର୍ଣ୍ଣୋ ହେମାଙ୍ଗୋ ବରାଙ୍ଗଶ୍ଚନ୍ଦନାଙ୍ଗଦୀ ।
ସନ୍ନ୍ୟାସକୃତ୍ ଶମଃ ଶାନ୍ତୋ ନିଷ୍ଠାଶାନ୍ତିପରାୟଣଃ ॥

ହରିନାମ ପ୍ରଚାର ଉପଲକ୍ଷେ 'କୃଷ୍ଣ' ଏହି ଉତ୍ତମ ବର୍ଣ୍ଣ ଦୁଇଟି ବର୍ଣ୍ଣନ କରନ୍ତି ବୋଲି ତାଙ୍କର ଗୋଟିଏ ନାମ 'ସୁବର୍ଣ୍ଣବର୍ଣ୍ଣ' । ତାହାଙ୍କ ଅଙ୍ଗ ସ୍ୱର୍ଣ୍ଣ ପରି ଉଜ୍ଜ୍ୱଳ ବୋଲି ତାଙ୍କର ଗୋଟିଏ ନାମ 'ହେମାଙ୍ଗ' । ସାଧାରଣ ଲୋକଙ୍କ ଅପେକ୍ଷା ତାଙ୍କର ଅଙ୍ଗସମୂହଶ୍ରେଷ୍ଠ ବୋଲି ତାଙ୍କର ଗୋଟିଏ ନାମ 'ବରାଙ୍ଗ' । ଚନ୍ଦନର ବାଜୁ ପିନ୍ଧନ୍ତି ବୋଲି ତାଙ୍କର ନାମ 'ଚନ୍ଦନାଙ୍ଗଦୀ' । ସନ୍ନ୍ୟାସ ଗ୍ରହଣ କରନ୍ତି ବୋଲି ତାଙ୍କ ନାମ 'ସନ୍ନ୍ୟାସୀ' । ବୁଦ୍ଧି ଭଗବନ୍ନିଷ୍ଠ ହୋଇଥିବାରୁ ତାଙ୍କର ନାମ 'ଶମ' । ଅଚଞ୍ଚଳ ଚିତ୍ତ ବୋଲି ତାଙ୍କର ନାମ ଶାନ୍ତ, କୃଷ୍ଣ ଭକ୍ତିରେ ନିଷ୍ଠା ଏବଂ ନିବୃତ୍ତିପରାୟଣ ବୋଲି ତାଙ୍କର ନାମ 'ନିଷ୍ଠାଶାନ୍ତିପରାୟଣ' । ଏହି ଶ୍ଳୋକର ଉଦ୍ଦିଷ୍ଟ ବ୍ୟକ୍ତି ଯେ ଶ୍ରୀଗୌରହରି ଏହା ନିଃସନ୍ଦେହ ।

ନମସ୍ତେ ବାସୁଦେବାୟ ନମଃ ସଂକର୍ଷଣାୟ ଚ।
ପ୍ରଦ୍ୟୁମ୍ନାୟାନିରୁଦ୍ଧାୟ ତୁଭ୍ୟଂ ଭଗବତେ ନମଃ ॥

ଇତି ଦ୍ୱାପର ଉର୍ବୀଶ ସ୍ତୁବନ୍ତି ଜଗଦୀଶ୍ୱରମ୍ ।
ନାନାତନ୍ତ୍ରବିଧାନେନ କଳାବପି ତଥା ଶୃଣୁ ॥

କୃଷ୍ଣବର୍ଣ୍ଣଂ ତ୍ୱିଷାକୃଷ୍ଣଂ ସାଙ୍ଗୋପାଙ୍ଗାସ୍ତ୍ରପାର୍ଷଦମ୍ ।
ଯଜ୍ଞୈଃ ସଂକୀର୍ତ୍ତନପ୍ରାୟୈର୍ଯଜନ୍ତି ହିଁ ସୁମେଧସଃ ॥

(ଶ୍ରୀଭା: ୧୧।୫।୩୧-୩୨)

ହେ ରାଜନ୍ ! (ବୈବସ୍ୱତ ମନ୍ୱନ୍ତରର ଅଷ୍ଟାବିଂଶତି ଚତୁର୍ଯୁଗର) ଦ୍ୱାପରରେ ଲୋକେ ଏହି (ନମସ୍ତେ ବାସୁଦେବାୟ) ଇତ୍ୟାଦିରୂପେ ଜଗଦୀଶ୍ୱରଙ୍କୁ ସ୍ତୁତି କରନ୍ତି, ନାନାବିଧ ତନ୍ତ୍ରର ବିଧାନ ଅନୁସାରେ କଳିଯୁଗରେ ମଧ୍ୟ ଯେପରି ସ୍ତୁତି ଓ ପୂଜା କରିଥାନ୍ତି, ତାହା କହୁଛି ଶୁଣ । ସୁବୁଦ୍ଧି ବ୍ୟକ୍ତିମାନେ ସଂକୀର୍ତ୍ତନପ୍ରଧାନ ପୂଜୋପକରଣଦ୍ୱାରା ଅଙ୍ଗ ଓ ଉପାଙ୍ଗରୂପକ ଅସ୍ତ୍ର (ଅଥବା ଅଙ୍ଗ, ଉପାଙ୍ଗ ଓ ଅସ୍ତ୍ର) ଏବଂ ପାର୍ଷଦମାନଙ୍କ ସହିତ ଗୌରକାନ୍ତିବିଶିଷ୍ଟ କୃଷ୍ଣବର୍ଣ୍ଣ ଉଚ୍ଚାରଣ କରୁଥିବା ଭଗବାନଙ୍କର ଅର୍ଚ୍ଚନ କରିଥାଆନ୍ତି । ଶ୍ରୀମଦ୍ଭାଗବତର ଏହି ଉକ୍ତି ଚୈତନ୍ୟମହାପ୍ରଭୁଙ୍କ ବିଷୟରେ ଯେ ଉଦ୍ଦିଷ୍ଟ, ଏହା ସୁସ୍ପଷ୍ଟ ।

## ରୁକ୍ମବର୍ଣ୍ଣ ପୁରୁଷଙ୍କ ଦର୍ଶନରେ ହିଁ ପ୍ରେମପ୍ରାପ୍ତି

ରୁକ୍ମବର୍ଣ୍ଣ ଅର୍ଥ ସ୍ୱର୍ଣ୍ଣବର୍ଣ୍ଣ । ଏହି ଗୌର ହେଲେ ସ୍ୱର୍ଣ୍ଣବର୍ଣ୍ଣ ଶ୍ରୀକୃଷ୍ଣ । ଏହି ଅବତାରରେ ହିଁ ସେ ନିଜେ ଆଚରଣ କରି ରାଗମାର୍ଗୀୟ ଭଜନପଦ୍ଧତି ଶିକ୍ଷା ଦେଇଗଲେ । ନିଜେ ଆଚରଣ କରିବାଦ୍ୱାରା ଗୋପୀ ପ୍ରେମ କି ବସ୍ତୁ, ତାହା ସେ ନିଜେ ପର୍ଯ୍ୟାପ୍ତରୂପେ ଆସ୍ୱାଦନ କରିବା ସଙ୍ଗେ ସଙ୍ଗେ ନିର୍ବିଚାରରେ ବିନା ସାଧନରେ ଜଗଦ୍‌ବାସୀ ସମସ୍ତଙ୍କୁ ଏପରିକି ପଶୁପକ୍ଷୀ ବୃକ୍ଷଲତାଦିଙ୍କୁ ପର୍ଯ୍ୟନ୍ତ ଏହା ଦେଇଗଲେ । ତାଙ୍କ ସମୟରେ ଜଣେ ହେଲେ କେହି ପ୍ରେମ ପାଇବା ପାଇଁ ସାଧନ କରି ନାହାନ୍ତି । ତାଙ୍କ ଦର୍ଶନମାତ୍ରେ ହିଁ ସମସ୍ତେ ପ୍ରେମଲାଭ କରିଛନ୍ତି ଓ ତାପରେ ସେ ସେମାନଙ୍କୁ ଶ୍ରୀମହାମନ୍ତ୍ରଜପର ଉପଦେଶ ଦେଇଛନ୍ତି । ସେମାନଙ୍କର ଯେଉଁ ଶ୍ରୀମହାମନ୍ତ୍ରଜପ ତାହା ସେମାନଙ୍କ ପ୍ରାପ୍ତ ପ୍ରେମର ପରିପୁଷ୍ଟି ହିଁ ସାଧନ କରିଛି ।

ଶ୍ରୀମହାଭାରତ ଓ ଶ୍ରୀମଦ୍ଭାଗବତରେ ସ୍ୱର୍ଣ୍ଣମୟ କାନ୍ତି ଧାରଣପୂର୍ବକ ଶ୍ରୀଶ୍ୟାମସୁନ୍ଦର ଶ୍ରୀକୃଷ୍ଣଙ୍କର ଶ୍ରୀଗୌରଅବତାର ଗ୍ରହଣ କଥା ବର୍ଣ୍ଣିତ ହୋଇଛି ଏବଂ ଶ୍ରୀଗୌରଅବତାରରେ ତାଙ୍କ ଦର୍ଶନମାତ୍ରେ ଜଗଦ୍‌ବାସୀ ଜୀବ ପ୍ରେମରେ ବିହ୍ୱଳ ହୋଇଛନ୍ତି । ଏତଦ୍‌ବ୍ୟତୀତ ଶ୍ରୁତିରେ ମଧ୍ୟ ଶ୍ରୀଗୌରାବତାର କଥା ଏବଂ ତାଙ୍କ ଦର୍ଶନମାତ୍ରେ ସମସ୍ତଙ୍କର ପ୍ରେମପ୍ରାପ୍ତି କଥା ବର୍ଣ୍ଣିତ ହୋଇଛି । ତାହା କହୁଛି ଶୁଣ ।

''ଯଦା ପଶ୍ୟଃ ପଶ୍ୟତେ ରୁକ୍ମବର୍ଣ୍ଣ
କର୍ତ୍ତାରମୀଶଂ ପୁରୁଷଂ ବ୍ରହ୍ମଯୋନିମ୍ ।
ତଦା ବିଦ୍ୱାନ୍ ପୁଣ୍ୟପାପେ ବିଧୂୟ
ନିରଞ୍ଜନଃ ପରମଂ ସାମ୍ୟମୁପୈତି ।।'' (ମୁଣ୍ଡକ ୩।୧।୩)

ଅର୍ଥାତ୍ ଯେତେବେଳେ କୌଣସି ଦ୍ରଷ୍ଟା କର୍ତ୍ତା, ଈଶ୍ୱର, ବ୍ରହ୍ମଯୋନି ରୁକ୍ମବର୍ଣ୍ଣ ପୁରୁଷଙ୍କୁ ଦର୍ଶନ କରେ, ସେତେବେଳେ (ତତ୍‌କ୍ଷଣାତ୍) ତାହାର ସମସ୍ତ ପୁଣ୍ୟ ଓ ପାପ ବିଧୌତ ହୋଇଯାଏ । ସେ ନିରଞ୍ଜନ ଓ ବିଦ୍ୱାନ୍ ହୁଏ ଏବଂ ପରମସାମ୍ୟ ଲାଭ କରେ । ଏହି ଶ୍ଳୋକର ପ୍ରତ୍ୟେକଟି ଶବ୍ଦର ଅର୍ଥ କହୁଛି ।

**ପଶ୍ୟଃ**–କୌଣସି ଦ୍ରଷ୍ଟା । ଏଠାରେ 'ପଶ୍ୟଃ' ଶବ୍ଦର କୌଣସି ବିଶେଷଣ ନାହିଁ । ତେଣୁ ଉକ୍ତ ଦ୍ରଷ୍ଟା ପାପୀ ହୋଇପାରେ, ପୁଣ୍ୟବାନ୍ ହୋଇପାରେ, କିଂବା ଯେକୌଣସି ଜୀବ ହୋଇପାରେ ।

**ବ୍ରହ୍ମଯୋନି**–ଯେ ନିଜେ ବ୍ରହ୍ମ ଏବଂ ବ୍ରହ୍ମର ଓ ସକଳ ବସ୍ତୁର ମୂଳ, ସେ ହେଲେ ବ୍ରହ୍ମଯୋନି । 'ବ୍ରହ୍ମଣୋ ହି ପ୍ରତିଷ୍ଠାମ୍' (ଶ୍ରୀଗୀ: ୧୪।୨୭) । ଅର୍ଥାତ୍ ପରବ୍ରହ୍ମ ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ ହିଁ ବ୍ରହ୍ମର ପ୍ରତିଷ୍ଠା । ପ୍ରତିଷ୍ଠା ଶବ୍ଦର ଅର୍ଥ ଯାହାଠାରେ ପ୍ରତିଷ୍ଠିତ ରହିହୁଏ । ଅର୍ଥାତ୍ ଯାହା ପରମ ଆଶ୍ରୟ । ଏଠାରେ 'ବ୍ରହ୍ମ' ଶବ୍ଦ ନିର୍ବିଶେଷ ବ୍ରହ୍ମକୁ ହିଁ ବୁଝାଏ । ଶ୍ରୀକୃଷ୍ଣ

ନିର୍ବିଶେଷ ବ୍ରହ୍ମର ମଧ ପ୍ରତିଷ୍ଠା ବା ପରମ ଆଶ୍ରୟ ଅର୍ଥାତ୍ ମୂଳ ବା ଯୋନି । ଅତଏବ ଶ୍ରୀକୃଷ୍ଣ ହିଁ ଯେ ବ୍ରହ୍ମଯୋନି, ଏହା ତାଙ୍କ ଶ୍ରୀମୁଖବାକ୍ୟରୁ ଜଣାଗଲା ।

ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ ଯଦି ବ୍ରହ୍ମଯୋନି ହେଲେ, ସେ ତ ଶ୍ୟାମବର୍ଣ୍ଣ । ଏଠାରେ ତ ଶ୍ୟାମବର୍ଣ୍ଣ କଥା କୁହା ହୋଇନାହିଁ, ରୁକ୍ମବର୍ଣ୍ଣ ବା ସ୍ୱର୍ଣ୍ଣବର୍ଣ୍ଣ କଥା କୁହା ହୋଇଛି । ଏହାର ତାତ୍ପର୍ଯ୍ୟ ଏହି ଯେ, ସେହି ଶ୍ୟାମବର୍ଣ୍ଣ ଶ୍ରୀକୃଷ୍ଣ ହିଁ ପ୍ରେମଦାନାର୍ଥେ ତାଙ୍କର ସର୍ବଶ୍ରେଷ୍ଠ ଆରାଧିକା ହ୍ଲାଦିନୀର ମୂର୍ତ୍ତିମାନ ପ୍ରକାଶ ଶ୍ରୀରାଧାରାଣୀଙ୍କ ଭାବ ଓ ସ୍ୱର୍ଣ୍ଣକାନ୍ତି ଧାରଣ କରି ରୁକ୍ମବର୍ଣ୍ଣ ପୁରୁଷ (ଶ୍ରୀଗୌରହରି) ହୋଇଛନ୍ତି । ସ୍ୱୟଂ ଭଗବାନଙ୍କର ଏହି ରୁକ୍ମବର୍ଣ୍ଣ ପୁରୁଷ ସ୍ୱରୂପଟି ମଧ ନିତ୍ୟ । ତେଣୁ ଶ୍ରୁତିରେ ଏହା ବର୍ଣ୍ଣିତ ହୋଇଛି ।

**କର୍ତ୍ତାରମ୍**—ସେହି ରୁକ୍ମବର୍ଣ୍ଣ ପୁରୁଷ ସ୍ୱୟଂ ଭଗବାନ୍ (ବ୍ରହ୍ମଯୋନି) ବୋଲି ସେ ସର୍ବମୟ କର୍ତ୍ତା ।

**ଈଶମ୍**—ସେହି ରୁକ୍ମବର୍ଣ୍ଣ ପୁରୁଷ ହେଉଛନ୍ତି ଈଶ୍ୱର । ସେ ସ୍ୱୟଂ ଭଗବାନ୍ ବୋଲି ପରମେଶ୍ୱର ।

ଏହି ରୁକ୍ମବର୍ଣ୍ଣ ପୁରୁଷଙ୍କ ଦର୍ଶନର ଫଳ କଅଣ, ତାହା ଉକ୍ତ ଶ୍ଳୋକର ଦ୍ୱିତୀୟ ପାଦରେ କୁହାଯାଇଛି ।

**ତଦା**—ଦର୍ଶନ ସମୟରେ ବା ଦର୍ଶନମାତ୍ରେ ।

**ପୁଣ୍ୟପାପେ ବିଧୂୟ**—ପୁଣ୍ୟ ଓ ପାପକୁ ବିଧୌତ କରି । ପୁଣ୍ୟ ଓ ପାପ ହେଉଛି ବନ୍ଧନର ହେତୁଭୂତ କର୍ମ । ସେହି କର୍ମକୁ ସମୂଳେ ଦଗ୍ଧ କରି । ବନ୍ଧନ ହେଲା ମାୟାର କାର୍ଯ୍ୟ । ଏହି ମାୟାକୁ 'ଅବିଦ୍ୟା' ବୋଲି କୁହାଯାଇଛି । ''ବିଷ୍ଣୁଶକ୍ତିଃ ପରା ପ୍ରୋକ୍ତା କ୍ଷେତ୍ରଜ୍ଞାଖ୍ୟା ତଥାପରା । ଅବିଦ୍ୟାକର୍ମସଂଜ୍ଞାନ୍ୟା ତୃତୀୟା ଶକ୍ତିରିଷ୍ୟତେ ।'' (ବି:ପୁ: ୬।୭।୬୧)— ଅର୍ଥାତ୍ ଶ୍ରୀବିଷ୍ଣୁଙ୍କର ତିନୋଟି ଶକ୍ତି, ଯଥା—ପରାଶକ୍ତି (ଚିଚ୍ଛକ୍ତି), କ୍ଷେତ୍ରଜ୍ଞା ଶକ୍ତି (ଜୀବଶକ୍ତି) ଓ ତୃତୀୟ ଶକ୍ତିଟି ହେଉଛି ଅବିଦ୍ୟା (ମାୟାଶକ୍ତି), ଯାହାର ଅନ୍ୟ ନାମ କର୍ମ ।

ରୁକ୍ମବର୍ଣ୍ଣ ପୁରୁଷଙ୍କ ଦର୍ଶନମାତ୍ରେ ଦ୍ରଷ୍ଟାର ବନ୍ଧନଜନକ ପୁଣ୍ୟପାପାଦି ସମସ୍ତ କର୍ମ (ମାୟା ବା ଅବିଦ୍ୟା) ସମୂଳ ଦୂରୀଭୂତ ହୋଇଯାଏ ।

**ନିରଞ୍ଜନ**—ଅଞ୍ଜନଶୂନ୍ୟ । ଅଞ୍ଜନ ଶବ୍ଦର ଅର୍ଥ ହେଉଛି ରଙ୍ଗ, ଦାଗ । ରୁକ୍ମବର୍ଣ୍ଣ ପୁରୁଷଙ୍କ ଦର୍ଶନଫଳରେ ଦ୍ରଷ୍ଟାର କର୍ମ ବା ମାୟା ଏପରିଭାବରେ ଦୂରୀଭୂତ ହୁଏ ଯେ, ତାହାଠାରେ ଆଉ ମାୟାର କୌଣସି ଦାଗ ବା ଚିହ୍ନ ପର୍ଯ୍ୟନ୍ତ ରହେ ନା । ଅର୍ଥାତ୍ ସେ ସମ୍ପୂର୍ଣ୍ଣରୂପେ ମାୟା ବା ଅବିଦ୍ୟାମୁକ୍ତ ହୋଇଯାଏ । ତେଣୁ ନିରଞ୍ଜନ କହିଲେ ସମ୍ପୂର୍ଣ୍ଣରୂପେ ମାୟାମୁକ୍ତକୁ ହିଁ ବୁଝାଏ ।

**ବିଦ୍ୱାନ୍**—ରୁକ୍ମବର୍ଣ୍ଣ ପୁରୁଷଙ୍କ ଦର୍ଶନଫଳରେ ଦ୍ରଷ୍ଟାର ବନ୍ଧନର ହେତୁଭୂତ ସମସ୍ତ କର୍ମ ବିନଷ୍ଟ ହୋଇଯିବାହେତୁ ସେ ନିରଞ୍ଜନ ହୁଏ ଏବଂ ତାପରେ ସେ ବିଦ୍ୱାନ୍ ହୁଏ । ବିଦ୍ୱାନ୍ ଅର୍ଥ ଆତ୍ମବିତ୍ ବା ବ୍ରହ୍ମାନୁଭବୀ ।

"ପରା–ଯୟା ତଦକ୍ଷରମଧିଗମ୍ୟତେ ।" (ମୁଣ୍ଡକ ୧।୧।୫)

ଅର୍ଥାତ୍ ପରା ବିଦ୍ୟାଦ୍ୱାରା ପରବ୍ରହ୍ମଙ୍କୁ ଲାଭ କରାଯାଏ । ସୁତରାଂ ପରବ୍ରହ୍ମଙ୍କର ସମ୍ୟକ୍ ପ୍ରାପ୍ତିର ଉପାୟ ହେଲା ପରା ବିଦ୍ୟା । ଏହି ପରା ବିଦ୍ୟା ହିଁ ଭକ୍ତି । ଶ୍ରୀଗୀତାରେ ମଧ୍ୟ ଶ୍ରୀକୃଷ୍ଣ କହିଛନ୍ତି–"ଭକ୍ତ୍ୟା ମାମଭିଜାନାତି" (୧୮।୫୫) । ଭକ୍ତିଦ୍ୱାରା ହିଁ ପରବ୍ରହ୍ମଙ୍କୁ ଜାଣି ହୁଏ । ପରବ୍ରହ୍ମ ହେଲେ "ଭକ୍ତିବଶଃ ପୁରୁଷଃ । ଭକ୍ତିରେବ ଭୂୟସୀ ॥" (ମାଠର ଶ୍ରୁତି) । ଭକ୍ତି ଅର୍ଥ ସେବା । ସେବ୍ୟଙ୍କ ପ୍ରତି ପ୍ରୀତି ବା ପ୍ରେମ ନ ଥିଲେ ତାଙ୍କ ସେବାର ବାସନା ହୃଦୟରେ ଜାଗ୍ରତ ହେବ ନାହିଁ । ତେଣୁ ସେବାରେ ପ୍ରବୃତ୍ତ ହେବା ପୂର୍ବରୁ ସେବକହୃଦୟରେ ସେବ୍ୟ ପ୍ରତି ପ୍ରୀତି ବା ପ୍ରେମ ଅବଶ୍ୟ ରହିବ । ଅତଏବ ଭକ୍ତି ଅର୍ଥ ପ୍ରେମଭକ୍ତି ବା ପ୍ରେମ । ପ୍ରେମ ନ ଥିଲେ ଶ୍ରୀକୃଷ୍ଣ ବଶୀଭୂତ ହେବା ସମ୍ଭବ ନୁହେଁ ।

ପୂର୍ବରୁ କହିଛି ଯେ, ଯେ ପରବ୍ରହ୍ମଙ୍କୁ ଜାଣିଛନ୍ତି ଅର୍ଥାତ୍ ତାଙ୍କ ସ୍ୱରୂପ ଅନୁଭବ କରିଛନ୍ତି (ଯେ ବ୍ରହ୍ମାନୁଭବୀ), ସେ ହିଁ ବିଦ୍ୱାନ୍ । ପରବ୍ରହ୍ମଙ୍କୁ ଅନୁଭବ କରିବାର ଏକମାତ୍ର ଉପାୟ ଯେତେବେଳେ ପରା ବିଦ୍ୟା ବା ପ୍ରେମଭକ୍ତି ଏବଂ ବିଦ୍ୱାନ୍ ବ୍ୟକ୍ତି ହିଁ ଯେତେବେଳେ ବ୍ରହ୍ମାନୁଭବୀ, ସେତେବେଳେ ବିଦ୍ୱାନ୍ ବ୍ୟକ୍ତି ହିଁ ଯେ ନିଶ୍ଚିତରୂପେ ପ୍ରେମବାନ୍, ଏଥିରେ ଦ୍ୱିମତ ହେବାର କିଛି ନାହିଁ । ଅତଏବ 'ବିଦ୍ୱାନ୍' ଶବ୍ଦର ଅର୍ଥ ପ୍ରେମବାନ୍ ବା ପ୍ରେମିକ ।

**ପରମଂ ସାମ୍ୟମୁପୈତି**–ଦ୍ରଷ୍ଟା ରୁକ୍ମବର୍ଣ୍ଣ ପୁରୁଷଙ୍କୁ ଦର୍ଶନ କରିବା ପରେ ପରମସାମ୍ୟ ଲାଭ କରନ୍ତି । ପରମସାମ୍ୟ କାହା ସଙ୍ଗରେ ? ନିଶ୍ଚିତରୂପେ ଯେଉଁ ରୁକ୍ମବର୍ଣ୍ଣ ପୁରୁଷଙ୍କୁ ଦର୍ଶନ କରନ୍ତି, ତାଙ୍କରି ସଙ୍ଗରେ । ତେବେ ଦ୍ରଷ୍ଟା କ'ଣ ଆଉ ଜଣେ ରୁକ୍ମବର୍ଣ୍ଣ ପୁରୁଷ ହୋଇଯାଏ ? ନା, ତାହା ହୋଇ ନ ପାରେ । କାରଣ ଉପର୍ଯୁକ୍ତ ଶ୍ରୁତିବାକ୍ୟରୁ ଜଣାଯାଏ ଯେ, ଯେ ଦ୍ରଷ୍ଟା, ତାହାର ପାପପୁଣ୍ୟ ଥିଲା । ଯାହାର ପାପପୁଣ୍ୟ ଥାଏ ସେ ବ୍ରହ୍ମ ନୁହେଁ–ଜୀବ । କେବଳ ଜୀବ ନୁହେଁ–ଅବିଦ୍ୟାଗ୍ରସ୍ତ ଜୀବ । ଯେଉଁ ଜୀବର ସ୍ୱରୂପ ପରବ୍ରହ୍ମଙ୍କଠାରୁ ସମ୍ପୂର୍ଣ୍ଣ ପୃଥକ୍, ସେ ପୁଣି କିପରି ସ୍ୱୟଂ ପରବ୍ରହ୍ମ ପାଲଟିଯିବ ?

ତାହାହେଲେ 'ପରମଂ ସାମ୍ୟମୁପୈତି'–ବାକ୍ୟର ଅର୍ଥ ଏହିପରିଭାବରେ ହେବ–ରୁକ୍ମବର୍ଣ୍ଣ ପୁରୁଷଙ୍କ ଦର୍ଶନପ୍ରଭାବରେ ତାହାଙ୍କ କୃପାରୁ ତାହାଙ୍କ ଗୁଣ ଦ୍ରଷ୍ଟା(ଭକ୍ତ)ଠାରେ ସଞ୍ଚାରିତ ହୋଇଥାଏ । ଏହା ମଧ୍ୟ ଶାସ୍ତ୍ରାନୁମୋଦିତ କଥା । ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ଗୁଣ ତାଙ୍କ ଭକ୍ତଙ୍କଠାରେ ସଞ୍ଚାରିତ ହୋଇଥାଏ । ଅତଏବ ରୁକ୍ମବର୍ଣ୍ଣ ପୁରୁଷଙ୍କ ଯେଉଁ ପ୍ରଭାବରୁ ତାହାଙ୍କ ଦର୍ଶନମାତ୍ରେ ଲୋକେ କର୍ମବନ୍ଧନରୁ ସମ୍ୟଗ୍‌ରୂପେ ମୁକ୍ତ ହୋଇ ପ୍ରେମ ଲାଭ କରନ୍ତି, ତାହାଙ୍କର ସେହି ପ୍ରଭାବ ସହିତ ପରମସାମ୍ୟ ଲାଭ ହୁଏ । ଅର୍ଥାତ୍ ରୁକ୍ମବର୍ଣ୍ଣ ପୁରୁଷଙ୍କ ଦର୍ଶନମାତ୍ରେ ଯେପରି ଦ୍ରଷ୍ଟା ନିରଞ୍ଜନ ଅର୍ଥାତ୍ କର୍ମବନ୍ଧନମୁକ୍ତ ଓ ବିଦ୍ୱାନ୍ ଅର୍ଥାତ୍ ପ୍ରେମବାନ୍ ହୁଏ, ସେହିପରି ତାଙ୍କୁ ଯେ ଦର୍ଶନ କରେ, ସେ ମଧ୍ୟ ନିରଞ୍ଜନ ଓ ପ୍ରେମବାନ୍ ହୁଏ ।

ଶ୍ରୀଗୌରହରିଙ୍କ ଦର୍ଶନପ୍ରଭାବରେ ଯେଉଁ ଲୋକ ପ୍ରେମ ଲାଭ କରୁଥିଲା ତାକୁ ଯେ ଦେଖୁଥିଲା, ସେ ମଧ ପ୍ରେମଲାଭ କରି ଧନ୍ୟାତିଧନ୍ୟ ହେଉଥିଲା; ପୁଣି ତାକୁ ଯେ ଦେଖୁଥିଲା, ସେ ମଧ ପ୍ରେମଲାଭ କରି କୃତାର୍ଥ ହେଉଥିଲା । ଏହା ଥିଲା ଶ୍ରୀଗୌରହରିଙ୍କ ଅଲୌକିକ ପ୍ରଭାବ ।

ଏ ତ ଗଲା ମୁଣ୍ଡକ ଶ୍ରୁତି କଥା । ମୈତ୍ରାୟଣୀ ଶ୍ରୁତିରେ ମଧ ସେହିପରି ବିବୃତ ହୋଇଛି–

"ଯଦା ପଶ୍ୟନ୍ ପଶ୍ୟତି ରୁକ୍ମବର୍ଣ୍ଣଂ
କର୍ତ୍ତାରମୀଶଂ ପୁରୁଷଂ ବ୍ରହ୍ମଯୋନିମ୍ ।
ତଦା ବିଦ୍ୱାନ୍ ପୁଣ୍ୟପାପେ ବିହାୟ
ପରେଽବ୍ୟୟେ ସର୍ବମେକୀକରୋତ୍ୟେବଂ ହ୍ୟାହ ।।" (୬।୧୮)

ଅର୍ଥାତ୍ ରୁକ୍ମବର୍ଣ୍ଣ ପୁରୁଷଙ୍କ ଦର୍ଶନ ପ୍ରଭାବରେ ଦର୍ଶନକାରୀ ସମସ୍ତ କର୍ମବନ୍ଧନରୁ ମୁକ୍ତ ହୋଇ ପ୍ରେମ ଲାଭ କରେ । ପ୍ରେମ ଲାଭ କରିବା ପରେ ସେ ଉପଲବ୍ଧି କରିପାରେ ଯେ, ପରବ୍ରହ୍ମ ହିଁ ଜୀବର ଏକମାତ୍ର ପ୍ରୀତିର ପାତ୍ର ଏବଂ 'ପ୍ରିୟତ୍ୱ' ବସ୍ତୁଟି ସ୍ୱରୂପତଃ ପାରସ୍ପରିକ ବୋଲି ଜୀବ ମଧ ପରବ୍ରହ୍ମଙ୍କର ପ୍ରିୟ । ପରବ୍ରହ୍ମଙ୍କର ପ୍ରିୟ ହୋଇଥିବା ହେତୁ ସମସ୍ତ ଜୀବ ହିଁ ଯେ ପରବ୍ରହ୍ମଙ୍କର ପ୍ରିୟରୂପେ ଏକ, ସେହି ଉପଲବ୍ଧି ତାହାର ହୁଏ । ସେତେବେଳେ ସେ 'ପରେଽବ୍ୟୟେ' ପରେ ଅବ୍ୟୟେ; ଅବ୍ୟୟ ପରବ୍ରହ୍ମଙ୍କ ବିଷୟରେ 'ସର୍ବମେକୀକରୋତି'– ସମସ୍ତଙ୍କୁ ଏକପ୍ରକାର ଦେଖେ । ଅର୍ଥାତ୍ ସେ ନିଜେ ଯେପରି ପରବ୍ରହ୍ମଙ୍କ ପ୍ରତି ପ୍ରେମବାନ୍, ପ୍ରତ୍ୟେକ ଜୀବ ମଧ ସେହିପରି ତାଙ୍କ ପ୍ରତି ପ୍ରେମବାନ୍ । ସୁତରାଂ ସମସ୍ତେ ଏକ । ଏହି ଅନୁଭୂତି ତାହା ହୃଦୟରେ ସର୍ବକ୍ଷଣ ବିରାଜମାନ ଥାଏ । ମହାଭାଗବତ ଶ୍ରୀଉଦ୍ଧବଙ୍କର ପାଣ୍ଡବବିଦ୍ୱେଷୀ ଧୃତରାଷ୍ଟ୍ର ଓ ଦୁର୍ଯ୍ୟୋଧନାଦିଙ୍କୁ ବନ୍ଦନା ଏହାର ଉଦାହରଣ । ପ୍ରେମବାନ୍ ବ୍ୟକ୍ତି ଏହିପ୍ରକାର ସମସ୍ତଙ୍କୁ ଏକ କରେ ଅର୍ଥାତ୍ ସମସ୍ତେ ନିଜ ପରି ପ୍ରେମବାନ୍ ବୋଲି ଅନୁଭବ କରେ ।

**'ଏବଂ'**–ଶବ୍ଦର ଅର୍ଥ ହେଲା ଏହିପରିଭାବରେ ପ୍ରେମଲାଭ କରି ।

ଅନ୍ୟଭାବରେ ମଧ ଉପର୍ଯୁକ୍ତ ମୈତ୍ରାୟଣୀ ଶ୍ରୁତିବାକ୍ୟର ଅର୍ଥ କରାଯାଇପାରେ । ଯଥା–ଦ୍ରଷ୍ଟା ଯେପରି ରୁକ୍ମବର୍ଣ୍ଣ ପୁରୁଷଙ୍କ ଦର୍ଶନମାତ୍ରେ କର୍ମବନ୍ଧନମୁକ୍ତ ହୋଇ ପ୍ରେମଲାଭ କରେ, **ଏବଂ**–ଏହିପରିଭାବରେ ସେ ମଧ ତାହାର ଦର୍ଶନଦ୍ୱାରା ଅବ୍ୟୟ ପରବ୍ରହ୍ମ ବିଷୟରେ 'ସର୍ବମେକୀକରୋତି'–ତାହାର ଦର୍ଶନକାରୀ ସମସ୍ତଙ୍କୁ ନିଜ ସହିତ ଏକ କରେ । ଅର୍ଥାତ୍ ସେ ଯେପରି ଅବ୍ୟୟ ପରବ୍ରହ୍ମଙ୍କଠାରେ ପ୍ରେମ ଲାଭ କରିଛି, ତାହାକୁ ଯେ ଦର୍ଶନ କରେ, ସେ ମଧ ସେହିପରି ପରବ୍ରହ୍ମଙ୍କଠାରେ ପ୍ରେମ ଲାଭ କରି ତାହାର ସହିତ ଏକ ବା ସମାନ ହୁଏ ।

ଏହିପରି ଦେଖାଗଲା ଯେ, ମୁଣ୍ଡକ ଶ୍ରୁତି ଓ ମୈତ୍ରାୟଣୀ ଶ୍ରୁତିର ବାକ୍ୟ ସମତାପୂର୍ଯ୍ୟପର ।

ଶ୍ରୁତି, ଶ୍ରୀମଦ୍ଭାଗବତ ଓ ମହାଭାରତାଦି ଶାସ୍ତ୍ରରୁ ଶ୍ରୀଗୌର ହିଁ ଯେ ସ୍ୱୟଂ ଶ୍ରୀକୃଷ୍ଣ ତାହା ଜଣାଗଲା ଏବଂ ତାଙ୍କ ପ୍ରକଟକାଳରେ ତାଙ୍କ ଦର୍ଶନରେ ହିଁ ଲୋକେ ଏପରିକି ପଶୁପକ୍ଷୀ ଓ ବୃକ୍ଷଲତାଦି ପର୍ଯ୍ୟନ୍ତ ପ୍ରେମ ପାଇଛନ୍ତି । ଯେଉଁ ଜାଲିଆର ମାଛ ମାରି ପେଟ ପୋଷିବା ଏକମାତ୍ର କାର୍ଯ୍ୟ ଏବଂ ସାଧନର ଲେଶମାତ୍ର ଚିନ୍ତା ଯାହାର ହୃଦୟରେ ନ ଥିଲା, ସେ କେବଳ ତାଙ୍କ ସ୍ପର୍ଶ ପ୍ରଭାବରେ ହିଁ ପ୍ରେମ ପାଇଗଲା । କି ଅଦ୍ଭୁତ ତାଙ୍କର କାରୁଣ୍ୟ ଓ ବଦାନ୍ୟତା ! ତାଙ୍କର ଏହିସବୁ ଅଲୌକିକ ଲୀଳାଦ୍ୱାରା ସେ ପ୍ରମାଣ କରି ଦେଇ ଯାଇଛନ୍ତି ଯେ, ଯେ ବ୍ୟାକୁଳ ହୃଦୟରେ କେବଳ ତାଙ୍କ ଅହୈତୁକୀ କୃପାଲାଭ ପାଇଁ ତାଙ୍କୁ ଡାକିବ, ସେ ଯେ ଏହି ଜନ୍ମରେ ହିଁ ତାକୁ ପ୍ରେମଧନ ଦେଇ କୃତାର୍ଥ କରିବେ, ଏହା କହିବା ନିଷ୍ପ୍ରୟୋଜନ ।

**ବାବାଜୀ ମହାରାଜ**—ଏହା ହିଁ ଶ୍ରୀଗୌରାବତାରର ଜଗଦ୍‌ବାସୀଙ୍କୁ ଅଦ୍ଭୁତ ଦାନ । ଏହିପରି ମହାବଦାନ୍ୟ ଯେଉଁ ଶ୍ରୀଗୌରହରି, ସର୍ବଦା ବ୍ୟାକୁଳ ହୃଦୟରେ ତାଙ୍କୁ ଡାକିଲେ କଅଣ ସେ ଆମକୁ ଅନାୟାସରେ ପ୍ରେମ ଦେବେ ନାହିଁ ?

## ଶ୍ରୀଗୌର କାହିଁକି ଶ୍ରୀକୃଷ୍ଣଭଜନ ଶିକ୍ଷା ଦେଲେ ?

**ସୁବଳ**—ଶ୍ରୀଗୌର ତ ନିଜେ ସବୁବେଳେ 'କୃଷ୍ଣ କୃଷ୍ଣ' କହୁଥିଲେ ଏବଂ ତାଙ୍କ ଶିକ୍ଷାରେ ତ ସର୍ବତ୍ର ଶ୍ରୀକୃଷ୍ଣଙ୍କୁ ଭଜନ କରିବା ବିଷୟ ହିଁ ଅଛି । କିନ୍ତୁ ଆପଣ ଏଠାରେ ଶ୍ରୀଗୌରଭଜନ କଥା କହିବାର ତାତ୍ପର୍ଯ୍ୟ କଅଣ ?

**ବାବାଜୀ ମହାରାଜ**—ଶ୍ରୀଗୌର କାହିଁକି ଶ୍ରୀକୃଷ୍ଣଙ୍କୁ ଭଜନ କରିବାକୁ ଶିକ୍ଷା ଦେଇଗଲେ, ତାହା ବିଚାରିବା ଆବଶ୍ୟକ । ପୂର୍ବରୁ କହିଲି ଯେ, ସେ ଭକ୍ତଭାବ ଅଙ୍ଗୀକାର କରି ଅବତୀର୍ଣ୍ଣ ହୋଇଥିଲେ ଓ ସର୍ବଦା ଶ୍ରୀରାଧାରାଣୀଙ୍କ ଭାବରେ ପୂରାପୂରି ବିଭାବିତ ହୋଇ ରହୁଥିଲେ । ତେଣୁ ସେ ସେହି ଶ୍ରୀରାଧାଭାବରେ ହିଁ ଶ୍ରୀକୃଷ୍ଣଙ୍କ ବିରହରେ ଅଧିକାଂଶ ସମୟରେ ବ୍ୟାକୁଳ ହୋଇ କ୍ରନ୍ଦନ କରୁଥିଲେ । ଶ୍ରୀଚୈତନ୍ୟଚରିତାମୃତରେ ଶ୍ରୀଳ କୃଷ୍ଣଦାସ କବିରାଜ ଗୋସ୍ୱାମୀ ତାଙ୍କର ସେହି ଯେଉଁ ବ୍ୟାକୁଳ ଭାବ କଥା ବର୍ଣ୍ଣନା କରିଛନ୍ତି, ତାହା ଆଲୋଚନା କଲେ ହୃଦୟ ବିଦୀର୍ଣ୍ଣ ହୋଇଯିବ ଏବଂ ଚକ୍ଷୁରୁ ଅଶ୍ରୁଧାର ବୋହି ଆସିବ ।

ଶ୍ରୀରାଧାଙ୍କର ପ୍ରେମମାହାତ୍ମ୍ୟ କିପରି, ଏହି ପ୍ରେମଦ୍ୱାରା ଶ୍ରୀରାଧା ମୋର ଯେଉଁ ଅଦ୍ଭୁତ ମାଧୁର୍ଯ୍ୟ ଆସ୍ୱାଦନ କରନ୍ତି, ତାହାର ସ୍ୱରୂପ କଅଣ ଏବଂ ମୋର ମାଧୁର୍ଯ୍ୟ ଆସ୍ୱାଦନ କରି ଶ୍ରୀରାଧା ଯେଉଁ ପ୍ରକାର ସୁଖ ଆସ୍ୱାଦନ କରନ୍ତି ସେହି ସୁଖ ବା କିପରି—ଏହିସବୁ ବିଷୟ ଜାଣିବା ପାଇଁ ଶ୍ରୀକୃଷ୍ଣଙ୍କର ଅତିଶୟ ଲୋଭ ହେବାରୁ ସେ (ଈଶ୍ୱରଭାବ ଗ୍ରହଣ ନ କରି) ଭକ୍ତଭାବ ଅଙ୍ଗୀକାରପୂର୍ବକ ଶ୍ରୀରାଧାଙ୍କ ଭାବ ଓ କାନ୍ତି ଧାରଣ କରି ଶ୍ରୀଗୌରହରିରୂପେ ଏହି କଳିଯୁଗରେ ଶ୍ରୀନବଦ୍ୱୀପଧାମରେ ଅବତୀର୍ଣ୍ଣ ହୋଇଥିଲେ । ସେ ଯେତେବେଳେ ଶ୍ରୀରାଧାଙ୍କ ଭାବ ଅର୍ଥାତ୍ ଭକ୍ତଭାବ ଗ୍ରହଣ କରି ଅବତୀର୍ଣ୍ଣ ହୋଇଥିଲେ, ସମସ୍ତଙ୍କୁ ପ୍ରଭୁ ଶ୍ରୀକୃଷ୍ଣଙ୍କ ଭଜନ କରିବାକୁ ଶିକ୍ଷା ଦେବା ତାଙ୍କ ପକ୍ଷରେ ଯଥାର୍ଥ ହୋଇଛି ।

ତାପରେ ଆଉଗୋଟିଏ ଗୂଢ଼ କଥା ଏହି ଯେ ଶ୍ରୀଗୌର ଶ୍ରୀକୃଷ୍ଣାବତାରରେ ତାଙ୍କୁ ଈଶ୍ୱର ବା ପ୍ରଭୁରୂପେ ଭଜନ କରିବାକୁ ସମସ୍ତଙ୍କୁ ଶିକ୍ଷା ଦେଇଯାଇଛନ୍ତି । ତାଙ୍କ ପ୍ରତି ପ୍ରୀତିଯୁକ୍ତ ହୋଇ ହୃଦୟରେ ନିଜ ସ୍ୱାର୍ଥସିଦ୍ଧିର ଲେଶମାତ୍ର ଆଶା ନ ରଖି କେବଳ ତାଙ୍କ ସୁଖ ପାଇଁ ତାଙ୍କୁ କିପରି ଭଜନ କରାଯିବ, ସେ ବିଷୟ ତ ଶିକ୍ଷା ଦେଇ ନାହାନ୍ତି । ଦ୍ୱାପରଲୀଳା ଶେଷ କରି ସେ ଯେତେବେଳେ ନିତ୍ୟ ଗୋଲୋକକୁ ଗଲେ ସେତେବେଳେ ଏହି ଅଭାବବୋଧ ତାଙ୍କ ହୃଦୟରେ ଜାଗିଲା । ତେଣୁ ସେ ଚିନ୍ତା କଲେ, ବ୍ରଜବାସୀମାନଙ୍କର ତାଙ୍କ ପ୍ରତି ଯେଉଁ ସ୍ୱସୁଖବାସନାଶୂନ୍ୟ ବିମଳ ପ୍ରେମ, ତାହା କିପରି ଜଗଦ୍‌ବାସୀ ପାମର ପର୍ଯ୍ୟନ୍ତ ସମସ୍ତଙ୍କୁ ଦିଆଯିବ । ସେ ନିଜେ ନ ଆସିଲେ ଅନ୍ୟ କୌଣସି ଅବତାରଙ୍କ ଦ୍ୱାରା ତ ଏହା ସମ୍ଭବ ହୋଇପାରିବ ନାହିଁ, ଏହି ଚିନ୍ତା କରି ଶ୍ରୀକୃଷ୍ଣ ନିଜେ ଶ୍ରୀଗୌରହରିରୂପେ ଶ୍ରୀରାଧାଭାବ ବା ଭକ୍ତଭାବ ଗ୍ରହଣ କରି ଅବତୀର୍ଣ୍ଣ ହୋଇଥିଲେ । ଏହି ଗୌରାବତାରରେ ହିଁ ଶ୍ରୀକୃଷ୍ଣ ପ୍ରେମଦାନରୂପକ ତାଙ୍କ ଗୂଢ଼ ବାଞ୍ଛା ପୂର୍ଣ୍ଣ କରିବା ସଙ୍ଗେ ସଙ୍ଗେ ଏହି ରାଧାଭାବ ଆସ୍ୱାଦନ କରି ନିଜ ବାଞ୍ଛା ମଧ୍ୟ ପୂରଣ କଲେ ।

'ଶ୍ରୀକୃଷ୍ଣଙ୍କ ସୁଖବିଧାନ କରି ପାରିଲି ନାହିଁ'—ଏହି ଅଭାବ ମର୍ମେ ମର୍ମେ ବୋଧ କରି ଏହି ଅଭାବ ପୂରଣ ପାଇଁ ସର୍ବକ୍ଷଣ ବ୍ୟାକୁଳ ହୋଇ ତାଙ୍କୁ ଡାକିବାକୁ ସେ ଶିକ୍ଷା ଦେଇଗଲେ । ତାଙ୍କ ହୃଦୟର ଏହି ଭାବ ତାଙ୍କ ବର୍ଣ୍ଣିତ ଶିକ୍ଷାଷ୍ଟକରେ ପରିସ୍ଫୁଟ ହୋଇଛି ।

ସେ ଯେଉଁ ଭଜନପଦ୍ଧତି ଶିକ୍ଷା ଦେଇଗଲେ, ତାହାକୁ 'ରାଗାନୁଗା ଭକ୍ତି' କୁହାଯାଏ । ସେହି ରାଗାନୁଗା ଭକ୍ତି-ସାଧନର ପ୍ରଣାଳୀ ସମ୍ବନ୍ଧରେ ସେ ନିଜେ ତାଙ୍କ ପ୍ରିୟ ଭକ୍ତ ଶ୍ରୀସନାତନ ଗୋସ୍ୱାମୀଙ୍କୁ ଯେଉଁ ଶିକ୍ଷା ଦେଇଛନ୍ତି, ତାହା ଶ୍ରୀଚୈତନ୍ୟଚରିତାମୃତରେ ଏହିପରି ବର୍ଣ୍ଣିତ ହୋଇଛି—

''ମନେ ନିଜ ସିଦ୍ଧଦେହ କରିୟା ଭାବନ ।
ରାତ୍ରିଦିନେ କରେ ବ୍ରଜେ କୃଷ୍ଣେର ସେବନ ॥''

(ଶ୍ରୀ ଚୈ:ଚ:୨।୨୨।୯୦)

ଅର୍ଥାତ୍ ବାହାରେ ଯଥାବସ୍ଥିତ ଦେହରେ ଶ୍ରୀକୃଷ୍ଣନାମ ମହାମନ୍ତ୍ର ଉଚ୍ଚାରଣ କରିବା ସଙ୍ଗେ ସଙ୍ଗେ ମନୋମଧ୍ୟରେ ସର୍ବଦା ସ୍ୱରୂପଶକ୍ତିଙ୍କ କୃପାରୁ ଏକସଙ୍ଗେ ଶ୍ରୀଗୁରୁଦେବ ଓ ଶିଷ୍ୟ ହୃଦୟରେ ସ୍ଫୂର୍ତ୍ତିପ୍ରାପ୍ତ ଜାତରତି ସାଧକର ସେହି ସିଦ୍ଧଦେହରେ (ଗୋପୀଦେହରେ) ନିଜ ଅବସ୍ଥିତି ଚିନ୍ତା କରି ଅଷ୍ଟକାଳ ଶ୍ରୀକୃଷ୍ଣଙ୍କ ପ୍ରୀତିପ୍ରଦ ସେବାଚିନ୍ତାରେ ନିମଗ୍ନ ରହିବା ହିଁ ତାଙ୍କ ଶିକ୍ଷାର ମୁଖ୍ୟ ଉଦ୍ଦେଶ୍ୟ । ଏହାକୁ 'ଲୀଳାସ୍ମରଣ' କୁହାଯାଏ । ଅବଶ୍ୟ ଏହା ଜାତରତି ଭୂମିକାରେ ହିଁ କରଣୀୟ । ତା' ପୂର୍ବରୁ ନୁହେଁ । ତା' ପୂର୍ବରୁ କଲେ ଏହା ଅଧିକାରବହିର୍ଭୂତ ସାଧନ ହୋଇ ସାଧକକୁ ଭକ୍ତିପଥଚ୍ୟୁତ କରିଦେବ । ଆଜିକାଲି ଅଧିକାଂଶ ଅଜାତରତି

ସାଧକ ଏହି ଲୀଳାସ୍ମରଣ କରୁଛନ୍ତି । ଏହା କେବେହେଲେ ଭକ୍ତିସାଧନର ଅନୁକୂଳ ନୁହେଁ ବରଂ ପ୍ରତିକୂଳ ବୋଲି ଶ୍ରୀଜୀବପାଦ ଶ୍ରୀଭକ୍ତିସନ୍ଦର୍ଭ ୩୪୩ତମ ଅନୁଚ୍ଛେଦରେ ଶ୍ରୀମଦ୍ଭାଗବତର (୧୦।୩୩।୩୯) ''ବିକ୍ରୀଡ଼ିତଂ ବ୍ରଜବଧୂଭିରିଦଞ୍ଚ ବିଷ୍ଣୋଃ....'' ଶ୍ଳୋକର ଟୀକାରେ ଯାହା ଉଲ୍ଲେଖ କରିଛନ୍ତି, ତାହାର ମର୍ମ ଏହିପରି–''ଶ୍ଳୋକସ୍ଥ 'ଶ୍ରଦ୍ଧାନ୍ୱିତଃ' ଶବ୍ଦର ଅର୍ଥ ଶରଣାପତ୍ତିଲକ୍ଷଣଯୁକ୍ତ, କର୍ମାଧିକାରହେତୁକ ସ୍ୱସୁଖ ତାତ୍ପର୍ଯ୍ୟମୟ ଫଳକାମନା ପ୍ରତି ନିର୍ବେଦଯୁକ୍ତ, ଧର୍ମାର୍ଥକାମମୋକ୍ଷରୂପକ ଚତୁର୍ବର୍ଗର ଅଭିଳାଷ ନ ଥିବା ଶାସ୍ତ୍ରୀୟ ଶ୍ରଦ୍ଧାବିଶିଷ୍ଟ ବ୍ୟକ୍ତି ଅର୍ଥାତ୍ ଜାତରତି ବ୍ୟକ୍ତି ହିଁ ଏହି ଶ୍ଳୋକାନୁଯାୟୀ ଆଚରଣ କରିପାରିବେ । ପରନ୍ତୁ ଯେଉଁମାନେ ଅଜାତରତି କର୍ମାଧିକାରୀ ସେମାନଙ୍କ ପକ୍ଷରେ ଏହି ଲୀଳାସ୍ମରଣ ଅଧିକାରୋଚିତ ସାଧନ ନୁହେଁ । ଏ ବିଷୟରେ ସେ ଯାହା ଉଲ୍ଲେଖ କରିଛନ୍ତି, ତାହାର ମର୍ମାନୁବାଦ ଏହିପରି –''ଏ ସ୍ଥଳରେ ସାଧାରଣଭାବରେ ଶ୍ରୀକୃଷ୍ଣଭକ୍ତି ଶ୍ରେଷ୍ଠରୂପେ ଗଣା ହେଲେ ମଧ୍ୟ ତା' ମଧ୍ୟରେ ଶ୍ରୀକୃଷ୍ଣଙ୍କ ପ୍ରିୟତମ ଶ୍ରୀରାଧାଙ୍କ ସମ୍ବନ୍ଧୀୟ ତାଙ୍କର ଯେଉଁ ଲୀଳା, ତାହା ଶ୍ରେଷ୍ଠତମ ହୋଇଥାଏ । ଏହା ସ୍ୱତଃସିଦ୍ଧ କଥା । କିନ୍ତୁ ଏହି ମଧୁରରସାତ୍ମକ ଲୀଳା କାମାଦି ରିପୁବଶ ସାଧକ କିଂବା ବାତ୍ସଲ୍ୟ ବା ଦାସ୍ୟରସର ସାଧକର ସ୍ମରଣଯୋଗ୍ୟ ନୁହେଁ, ଯେହେତୁ ଏହା ସାଧକର ହୃଦୟର ଭାବର ବିରୁଦ୍ଧ ବା ଅପ୍ରାକୃତ ।

ଶ୍ରୀଜୀବପାଦଙ୍କର ଏହି ଉକ୍ତିଦ୍ୱାରା ସେ ଅଜାତରତି କର୍ମାଧିକାରୀ ବ୍ୟକ୍ତିକୁ ଲୀଳାସ୍ମରଣ କରିବାକୁ ନିଷେଧ କରିଛନ୍ତି । ଏହା ପ୍ରତ୍ୟେକ ଭକ୍ତିସାଧକର ଅନୁସରଣୀୟ ହେବା ଉଚିତ ।

ଶ୍ରୀଗୌରହରି ସର୍ବଦା କିପରି ଶ୍ରୀକୃଷ୍ଣଙ୍କ ଲୀଳାସ୍ମୃତିରେ ବିଭୋର ରହୁଥିଲେ, ତାହା ଶ୍ରୀଳ କୃଷ୍ଣଦାସ କବିରାଜ ଗୋସ୍ୱାମୀଙ୍କ ଭାଷାରେ ଏହିପରି ବ୍ୟକ୍ତ ହୋଇଛି–

''କୃଷ୍ଣଲୀଳାମୃତସାର ତାର ଶତ ଶତ ଧାର
ଦଶଦିଗେ ବହେ ଯାହା ହୈତେ ।
ସେ ଚୈତନ୍ୟଲୀଳା ହୟ, ସରୋବର ଅକ୍ଷୟ,
ମନୋହଂସ ଚରାହ ତାହାତେ ॥''

(ଶ୍ରୀଚୈ:ଚ:୨।୨୫।୨୨୩)

ଅର୍ଥାତ୍ ଯେଉଁଥିରୁ ଶ୍ରୀକୃଷ୍ଣଲୀଳାମୃତସାରର ଶତ ଶତ ଧାରା ଦଶଦିଗକୁ ପ୍ରବାହିତ ହେଉଛି, ସେହି ଶ୍ରୀଗୌରଲୀଳା ଗୋଟିଏ ଅକ୍ଷୟ ସରୋବରସଦୃଶ । ଅନୁକ୍ଷଣ ଏହି ଗୌରଲୀଳାରେ ନିମଗ୍ନ ରହିପାରିଲେ ହିଁ ଶ୍ରୀକୃଷ୍ଣଲୀଳାରେ ପ୍ରବେଶ ଲାଭ ହୋଇପାରିବ ।

ଶ୍ରୀକୃଷ୍ଣଭକ୍ତିରସିକଶିରୋମଣି ଶ୍ରୀଳ କୃଷ୍ଣଦାସ କବିରାଜ ଗୋସ୍ୱାମୀ ପ୍ରଭୁ ମୋ ପରି ଅଜାତରତି ରଜସ୍ତମୋଗୁଣତାଡ଼ିତ କର୍ମାଧିକାରୀ ଜୀବକୁ କି ଅପୂର୍ବ ସନ୍ଦେଶ ଦେଇଗଲେ ! ତାଙ୍କରି ଶିକ୍ଷାର ଅନୁସରଣରେ ଶ୍ରୀଳ ନରୋତ୍ତମ ଠାକୁର ମଧ୍ୟ କହିଗଲେ–

"ଯେ ଗୌରାଙ୍ଗେର ନାମ ଲୟ ତା'ର ହୟ ପ୍ରେମୋଦୟ
ତା'ରେ ମୁଇଁ ଯାଇ ବଲିହାରି ।
ଗୌରାଙ୍ଗ ଗୁଣେତେ ଝୁରେ ନିତ୍ୟଲୀଳା ତା'ରେ ସ୍ଫୁରେ
ସେ ଜନ ଭକତି-ଅଧିକାରୀ ॥
ଗୌରାଙ୍ଗେର ସଙ୍ଗୀଗଣେ ନିତ୍ୟସିଦ୍ଧ କରି' ମାନେ,
ସେ ଯାୟ ବ୍ରଜେନ୍ଦ୍ରସୁତ ପାଶ ।
ଶ୍ରୀଗୌଡ଼ମଣ୍ଡଳଭୂମି ଯେବା ଜାନେ ଚିନ୍ତାମଣି
ତାର ହୟ ବ୍ରଜଭୂମେ ବାସ ॥"

ଅର୍ଥାତ୍ ଯେ ଶ୍ରୀଗୌରନାମ କୀର୍ତ୍ତନ କରେ ତା'ର ପ୍ରେମୋଦୟ ହୋଇଥାଏ । ଯେ ସର୍ବକ୍ଷଣ ଶ୍ରୀଗୌର-ଗୁଣ-ସ୍ମରଣରେ ନିମଜ୍ଜିତ ଥାଏ, ଶ୍ରୀକୃଷ୍ଣଙ୍କ ନିତ୍ୟଲୀଳା ତାହାର ସ୍ଫୂର୍ତ୍ତିପ୍ରାପ୍ତ ହୋଇଥାଏ । ସେ ହିଁ ବସ୍ତୁତଃ ରାଗମାର୍ଗୀୟ ଭକ୍ତିର ଅଧିକାରୀ । ଶ୍ରୀଗୌରହରିଙ୍କର ଯେଉଁମାନେ ଲୀଳାସଙ୍ଗୀ ସେମାନେ ସାଧାରଣ ଜୀବ ନୁହନ୍ତି, ପରନ୍ତୁ ତାଙ୍କର ନିତ୍ୟସିଦ୍ଧ ପାର୍ଷଦ, ଏହି ଜ୍ଞାନ ଯାହାର ହେବ, ସେ ଅବଶ୍ୟ ଶ୍ରୀକୃଷ୍ଣଙ୍କ ପାଦପଦ୍ମ ଲାଭ କରିବ । ଶ୍ରୀଗୌଡ଼ମଣ୍ଡଳଭୂମିକୁ ଯେ ଚିନ୍ତାମଣି ଜ୍ଞାନ କରିବ, ସେ ବ୍ରଜବାସର ଅଧିକାର ପାଇବ ।

ଶ୍ରୀଳ ନରୋତ୍ତମ ଠାକୁର ତାଙ୍କର ଏହି ପଦାବଳୀଦ୍ୱାରା ଅଜାତରତି କର୍ମାଧିକାରୀ ଜୀବକୁ ଶ୍ରୀଗୌରଭଜନର ହିଁ ଶିକ୍ଷା ଦେଇଗଲେ ।

ପୁଣି ଶ୍ରୀଳ ପ୍ରବୋଧାନନ୍ଦ ସରସ୍ୱତୀପାଦ ମଧ୍ୟ ଶତକଣ୍ଠରେ ଶ୍ରୀଗୌରହରିଙ୍କ ମହିମା ତାଙ୍କ ରଚିତ ଶ୍ରୀଚୈତନ୍ୟଚନ୍ଦ୍ରାମୃତମ୍‌ରେ ପ୍ରକାଶ କରିଯାଇଛନ୍ତି ।

ଏଥିରୁ ସ୍ପଷ୍ଟ ସୂଚିତ ହୁଏ ଯେ, ପରମକରୁଣାମୟ ଶ୍ରୀକୃଷ୍ଣ ମାଦୃଶ କୋଟି କୋଟି ଜନ୍ମର ପାପୀ, ଅପରାଧୀ ଓ ଅନଭୀପ୍ସୁ ଜୀବକୁ ଅନାୟାସରେ ତାଙ୍କର ପ୍ରେମରସ ଆସ୍ୱାଦନର ଯୋଗ୍ୟ କରାଇବା ଉଦ୍ଦେଶ୍ୟରେ ହିଁ ତାଙ୍କର ଏହି ଶ୍ରୀଗୌରଲୀଳାର ଭିଆଣ କରିଛନ୍ତି । ଅର୍ଥାତ୍ ଏହି ଶ୍ରୀଗୌରଲୀଳାସ୍ମୃତିରେ ଅନୁକ୍ଷଣ ମଗ୍ନ ରହିପାରିଲେ ଶ୍ରୀକୃଷ୍ଣପ୍ରେମ ଅନାୟାସଲବ୍ଧ ହୋଇପାରିବ ।

ସୁବଳ, ଶ୍ରୀକୃଷ୍ଣଙ୍କ ଅପାର କରୁଣା କଥା ଯାହା ଶ୍ରୀଳ କୃଷ୍ଣଦାସ କବିରାଜ ଗୋସ୍ୱାମୀ ପ୍ରଭୁ, ଶ୍ରୀଳ ନରୋତ୍ତମ ଠାକୁର ଓ ଶ୍ରୀଳ ପ୍ରବୋଧାନନ୍ଦ ସରସ୍ୱତୀପାଦ ସେମାନଙ୍କ ଲେଖନୀରେ ପ୍ରକାଶ କରିଯାଇଛନ୍ତି, ତାହା ଶୁଣିଲ ତ ? ଏହି ମହାଜନମାନଙ୍କ ଅନୁସରଣରେ ଶ୍ରୀଳ ପୁରୀଦାସ ଗୋସ୍ୱାମୀ ଠାକୁର ତାଙ୍କର ଅନୁଗତ ସମସ୍ତଙ୍କୁ ସର୍ବକ୍ଷଣ ଏହି ଶ୍ରୀଗୌରନାମ ଗାନ ଓ ତାଙ୍କ ଲୀଳାର ଆଲୋଚନା ମାଧ୍ୟମରେ ତାଙ୍କ ପବିତ୍ର ସ୍ମୃତିକୁ ହୃଦୟରେ ଜାଗ୍ରତ ରଖିବାକୁ ବ୍ୟାକୁଳ ହୋଇ ଶିକ୍ଷା ଦେଇଗଲେ । ଏହାରି ଦ୍ୱାରା ହିଁ ଆମର ଶ୍ରୀକୃଷ୍ଣଙ୍କ ପ୍ରତି ପ୍ରେମ ଅବଶ୍ୟମ୍ଭାବୀ ହୋଇ ପାରିବ ବୋଲି ମଧ୍ୟ ସେ କହିଗଲେ ।

ଅତଏବ ସର୍ବଦା ବ୍ୟାକୁଳଭାବରେ ଏହି ଶ୍ରୀଗୌରନାମ କୀର୍ତ୍ତନ ଓ ଶ୍ରୀଚୈତନ୍ୟଭାଗବତ ଓ ଶ୍ରୀଚୈତନ୍ୟଚରିତାମୃତରୁ ଶ୍ରୀଗୌରଲୀଳାରସ ଆସ୍ୱାଦନ କରିପାରିଲେ ଏହି ଜନ୍ମରେ ହିଁ ତୁମେ ଅନାୟାସରେ ଶ୍ରୀକୃଷ୍ଣପ୍ରେମଲାଭର ଅଧିକାରୀ ହୋଇପାରିବ ।

ଏତେ ସୁନ୍ଦର ରାସ୍ତା ଆମ ନିକଟରେ ଥିଲେ ମଧ୍ୟ ଆମେ ଆମ ଦୁର୍ବୁଦ୍ଧିରୁ ହେଉ ବା ଦୁଃସଙ୍ଗରେ ପଡ଼ି ହେଉ, ଏହି ଶ୍ରୀଗୌରନାମ ଓ ଶ୍ରୀଗୌରଲୀଳାମୃତ ଆସ୍ୱାଦନ ନ କରି ଅପକ୍ୱ ବା ଅନଧିକାରୀ ଅବସ୍ଥାରେ ଶ୍ରୀକୃଷ୍ଣଲୀଳାସ୍ମରଣରେ ନିଯୁକ୍ତ ରହି ନିଜକୁ ଶୁଦ୍ଧଭକ୍ତିସାଧନରୁ ଦୂରେଇ ରଖୁଛୁ । ଅତଏବ ତୁମେ ସେପରି ଦୁର୍ବୁଦ୍ଧି ନ କରି ଅନୁକ୍ଷଣ କାନ୍ଦି କାନ୍ଦି ମହାବଦାନ୍ୟଶିରୋମଣି ଶ୍ରୀଗୌରହରିଙ୍କ ନାମ କୀର୍ତ୍ତନ ଓ ତାଙ୍କ ଲୀଳାରସ ଆସ୍ୱାଦନରେ ନିଜକୁ ନିଯୁକ୍ତ ରଖ । ଏହା ହିଁ ତୁମର ଅଧିକାରୋଚିତ ସାଧନ । ଶ୍ରୀଗୌର ହିଁ ସ୍ୱୟଂ ଶ୍ରୀକୃଷ୍ଣ । ସେ ଶ୍ରୀକୃଷ୍ଣଙ୍କଠାରୁ ଭିନ୍ନ ନୁହନ୍ତି ।

## ଶ୍ରୀଗୌରସ୍ୱରୂପଧାରଣ ଜୀବ ପ୍ରତି ଶ୍ରୀକୃଷ୍ଣଙ୍କର ଅପାର କରୁଣାର ଅଭିବ୍ୟକ୍ତି

ସୁବଳ, ଶ୍ରୀକୃଷ୍ଣଙ୍କର ତାଙ୍କ ପ୍ରତି ବିମୁଖ ଜୀବପ୍ରତି କି ଅପାର କରୁଣା ! ବିମୁଖ ଜୀବ କିପରି ଅନାୟାସରେ ତାଙ୍କ ପ୍ରତି ପ୍ରୀତିଯୁକ୍ତ ହୋଇପାରିବ, ଏହି ଶିକ୍ଷା ଦେବା ଉଦ୍ଦେଶ୍ୟରେ ହିଁ ସେ ଶ୍ରୀଗୌରସ୍ୱରୂପ ଧାରଣ କରିଥିଲେ । ଶ୍ରୀଚୈତନ୍ୟଚରିତାମୃତରେ ଶ୍ରୀକୃଷ୍ଣଙ୍କ ଉକ୍ତି– ‘‘ଆମି ବିନା ଅନ୍ୟେ ନାରେ ବ୍ରଜପ୍ରେମ ଦିତେ ।’’ ଅର୍ଥାତ୍ ମୁଁ ନ ଦେଲେ ଜୀବକୁ ଏହି ବ୍ରଜପ୍ରେମ ଆଉ କିଏ ବା ଦେବ ? ଶ୍ରୀକୃଷ୍ଣଙ୍କର ଏହି ଉକ୍ତିଦ୍ୱାରା ଜୀବ ପ୍ରତି ତାଙ୍କର ଅପାର କରୁଣା ଓ ସ୍ନେହ ପ୍ରକାଶ ପାଉ ନାହିଁ କି ? ସେହି କାରଣରୁ ସେ ଶ୍ରୀଗୌରସ୍ୱରୂପରେ ତାଙ୍କ ଭଜନପଦ୍ଧତି ନିଜେ ଆଚରଣ କରି ଶିକ୍ଷା ଦେଇଗଲେ । ସେ ଯେଉଁପରି ଭାବରେ ଭଜନପଦ୍ଧତି ଶିକ୍ଷା ଦେଇଗଲେ, ତାଙ୍କ ପୂର୍ବବର୍ତ୍ତୀ ଅବତାର ବା ଆଚାର୍ଯ୍ୟମାନେ ସେପରି ଶିକ୍ଷା ଦେଇନାହାନ୍ତି । ତାଙ୍କ ଶିକ୍ଷା ହେଲା ସମ୍ପୂର୍ଣ୍ଣ ନିଃସ୍ୱାର୍ଥ । ନିଜର ଧର୍ମ, ଅର୍ଥ, କାମ ବା ମୋକ୍ଷ କୌଣସି ସାଧନ ପ୍ରତି ବିନ୍ଦୁମାତ୍ର ଆଶା ନ ରଖି କେବଳ ତାଙ୍କ ପ୍ରୀତି ପାଇଁ ତାଙ୍କୁ ବ୍ୟାକୁଳଭାବରେ କାନ୍ଦି କାନ୍ଦି ଡାକିବା ହିଁ ତାଙ୍କର ଶିକ୍ଷା । ସାଧକର ଏହି ବ୍ୟାକୁଳ ପ୍ରାର୍ଥନା ଆର୍ତ୍ତବନ୍ଧୁ ଭଗବାନଙ୍କ ହୃଦୟକୁ ବିଗଳିତ କରିଦେବ ଏବଂ ସେ ତତ୍‌କ୍ଷଣାତ୍ ତାଙ୍କୁ କୃପା କରିବେ । ଏହା ହିଁ ତାଙ୍କ କୃପାଲାଭର ନିଶ୍ଚିତ ଓ ସର୍ବଶ୍ରେଷ୍ଠ ପନ୍ଥା । ତେଣୁ ସେ ହେଲେ ଭକ୍ତିଶିକ୍ଷକ । ଅର୍ଥାତ୍ କିପରି ଭକ୍ତିର ଅନୁଷ୍ଠାନ କରାଯିବ, ତାହା ନିଜେ ଆଚରଣ କରି ଜଗଦ୍‌ବାସୀଙ୍କୁ ଶିକ୍ଷା ଦେଇଗଲେ । ତାଙ୍କ ଆଚରଣ ଏତେ ନିଖୁଣ ଯେ, ଯେ ନିଷ୍କପଟ ହୃଦୟରେ କେବଳ ଶୁଦ୍ଧଭକ୍ତିଲାଭ ଉଦ୍ଦେଶ୍ୟରେ ତାଙ୍କ ଶିକ୍ଷାର ଅନୁସରଣ କରିବ, ସେ ନିଶ୍ଚିତରୂପେ ଏହି ଜନ୍ମରେ ହିଁ ପ୍ରେମଲାଭର ଅଧିକାରୀ ହୋଇପାରିବ । ତାଙ୍କ ଆଚରଣ ବିଷୟ ଆହୁରି ପରିସ୍ଫୁଟ କରି ତାଙ୍କ ଅନୁସରଣକାରୀ ଶ୍ରୀରୂପ, ଶ୍ରୀସନାତନ, ଶ୍ରୀରଘୁନାଥ ଦାସ ଓ ଶ୍ରୀଜୀବାଦି ଗୋସ୍ୱାମିଗଣ ଶିକ୍ଷା ଦେଇଯାଇଛନ୍ତି । କେବଳ ଶ୍ରୀଗୌରହରିଙ୍କ

ଉପଦେଶ, ଆଚରଣ ଓ ଉପର୍ଯୁକ୍ତ ଗୋସ୍ୱାମୀମାନଙ୍କ ଶିକ୍ଷା ଠିକ୍ ଠିକ୍ ଅନୁସରଣ କରି ସାଧନରେ ପ୍ରବୃତ୍ତ ହେଲେ ଏହି ଜନ୍ମରେ ହିଁ ସିଦ୍ଧିଲାଭ ଅବଶ୍ୟମ୍ଭାବୀ ହେବ ।

ସୁତରାଂ କାଳବିଳମ୍ବ ନ କରି ଶ୍ରୀଗୌର-ଆରାଧନାରେ ତତ୍ପର ହୁଅ ।

## ଶ୍ରୀଗୌରଭଜନର ବୈଶିଷ୍ଟ୍ୟ

ଶ୍ରୀଗୌରହରିଙ୍କର ସେହି ଭାବାବେଶ ଓ କରୁଣା ଚିନ୍ତାରେ ଆବିଷ୍ଟ ହୋଇ ଶ୍ରୀଲ ପ୍ରବୋଧାନନ୍ଦ ସରସ୍ୱତୀପାଦ ତାଙ୍କ ରଚିତ 'ଶ୍ରୀଚୈତନ୍ୟଚନ୍ଦ୍ରାମୃତମ୍' ଗ୍ରନ୍ଥରେ କେବଳ ସେହି ଗୌରଭଜନର ହିଁ ଶିକ୍ଷା ଦେଇଛନ୍ତି ଏବଂ ଏହି ଗୌରଭଜନ ନ କଲେ ପ୍ରେମଲାଭ ଯେ ଅସମ୍ଭବ, ତାହା ମଧ୍ୟ ଉଲ୍ଲେଖ କରିଛନ୍ତି । ତହିଁରୁ କେତୋଟି ଉଦାହରଣ ଦେଉଛି ।

**ସୁବଳ**—ଆଜ୍ଞା, ସେ ବିଷୟରେ କିଛି ଶୁଣାଇଲେ କୃତାର୍ଥ ହୁଅନ୍ତି ।

**ବାବାଜୀ ମହାରାଜ**—ପରିଶିଷ୍ଟ ମିଶାଇ ୧୪୨ଟି ଶ୍ଳୋକରେ ସେ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ମହିମା ଯେପରି ବର୍ଣ୍ଣନା କରିଛନ୍ତି, ତାହା ଶୁଣିଲେ ଅତି ପାଷଣ୍ଡୀର ମଧ୍ୟ ତାଙ୍କ ଭଜନରେ ଲୋଭ ଜାତ ହେବ । ତହିଁରୁ କେତୋଟି କହୁଛି ଶୁଣ ।

"ପାଷାଣଂ ପରିଷିଞ୍ଚତାମୃତରସୈର୍ନୈବାଙ୍କୁରଃ ସମ୍ଭବେତ୍
ଲାଙ୍ଗୂଲଂ ସରମାପତେର୍ବିବୃଣୁତ ସ୍ୟାଦସ୍ୟ ନୈବାର୍ଜବମ୍ ।
ହସ୍ତାବୁନ୍ନୟତା ବୁଧାଃ କଥମହୋ ଧାର୍ଯ୍ୟଂ ବିଧୋର୍ମଣ୍ଡଳଂ
ସର୍ବଂ ସାଧନମସ୍ତୁ ଗୌରକରୁଣାଭାବେ ନ ଭାବୋତ୍ସବଃ ॥୧୦॥

ପାଷାଣକୁ ଅମୃତରସଦ୍ୱାରା ସିକ୍ତ କଲେ ମଧ୍ୟ ତହିଁରୁ କଦାପି ଅଙ୍କୁରୋଦ୍‌ଗମ ହେବ ନାହିଁ, କୁକୁରଲାଙ୍ଗୁଡ଼କୁ ଯେତେ ସିଧା କଲେ ମଧ୍ୟ ତାହା କଦାପି ସିଧା ହେବ ନାହିଁ, ହାତ ଉପରକୁ ଟେକି କେହି ଚନ୍ଦ୍ରମଣ୍ଡଳକୁ ଧରି ପାରିବ ନାହିଁ । ହେ ବୁଧଗଣ ! ତୁମ୍ଭମାନଙ୍କର ସବୁପ୍ରକାର ସାଧନ ଥିଲେ ମଧ୍ୟ ଶ୍ରୀଗୌରାଙ୍ଗଙ୍କ କରୁଣା ବ୍ୟତୀତ ପ୍ରେମାନନ୍ଦଲାଭର ସମ୍ଭାବନା ନାହିଁ ।

ପ୍ରେମା ନାମାଦ୍ଭୁତାର୍ଥଃ ଶ୍ରବଣପଥଗତଃ କସ୍ୟ ନାମ୍ନୋ ମହିମ୍ନାଂ
କୋ ବେତ୍ତା କସ୍ୟ ବୃନ୍ଦାବନବିପିନ-ମହାମାଧୁରୀଷୁ ପ୍ରବେଶଃ ।
କୋ ବା ଜାନାତି ରାଧାଂ ପରମରସଚମତ୍କାରମାଧୁର୍ଯ୍ୟସୀମା-
ମେକଶ୍ଚୈତନ୍ୟଚନ୍ଦ୍ରଃ ପରମକରୁଣୟା ସର୍ବମାବିଶ୍ଚକାର ॥୧୨॥

ପ୍ରେମ ନାମକ ବିଚିତ୍ର ବସ୍ତୁ କାହାର ବା ପୂର୍ବେ ଶ୍ରୁତିଗୋଚର ହୋଇଥିଲା, କିଏ ବା ନାମର ଅସୀମ ମାହାତ୍ମ୍ୟ ଜାଣିଥିଲା, କିଏ ବା ବୃନ୍ଦାବନର ପରମ ମଧୁର ଭାବର ତତ୍ତ୍ୱ ଜାଣିଥିଲା ଆଉ କିଏ ବା ଉଜ୍ଜ୍ୱଳରସର ବିଚିତ୍ର ମାଧୁର୍ଯ୍ୟର ପରାକାଷ୍ଠାସ୍ୱରୂପ ଶ୍ରୀରାଧାତତ୍ତ୍ୱ ଜାଣିଥିଲା, ପରନ୍ତୁ ଏକମାତ୍ର ଶ୍ରୀଚୈତନ୍ୟଚନ୍ଦ୍ର ହିଁ ପରମକରୁଣାବଶତଃ ଏହିସବୁ ତତ୍ତ୍ୱ ଆବିଷ୍କାର କରିଥିଲେ ।

ଯସ୍ୟୈବ ପାଦାମ୍ବୁଜଭକ୍ତିଲଭ୍ୟଃ ପ୍ରେମାଭିଧାନଃ ପରମଃ ପୁମର୍ଥଃ ।
ତସ୍ମୈ ଜଗନ୍ମଙ୍ଗଳମଙ୍ଗଳାୟ ଚୈତନ୍ୟଚନ୍ଦ୍ରାୟ ନମୋ ନମସ୍ତେ ॥୧୪॥

**ପ୍ରେମନାମକ ପରମପୁରୁଷାର୍ଥ ଏକମାତ୍ର ଯାହାଙ୍କର ପାଦପଦ୍ମର ଭଜନଦ୍ୱାରା ହିଁ ଲଭ୍ୟ ହୁଏ, ଜଗତର ପରମମଙ୍ଗଳଦାତା ସେହି ଶ୍ରୀଚୈତନ୍ୟଚନ୍ଦ୍ରରୂପୀ ଆପଣଙ୍କୁ ଅସଂଖ୍ୟ ପ୍ରଣତି ଜଣାଉଛି ।**

ଭ୍ରାନ୍ତଂ ଯତ୍ର ମୁନୀଶ୍ୱରୈରପି ପୁରା ଯସ୍ମିନ୍ କ୍ଷମାମଣ୍ଡଳେ
କସ୍ୟାପି ପ୍ରବିବେଶ ନୈବ ଧିଷଣା ଯଦ୍‌ବେଦ ନୋ ବା ଶୁକଃ ।
ଯନ୍ନ କ୍ୱାପି କୃପାମୟେନ ନ ନିଜେଽପ୍ୟୁଦ୍‌ଘାଟିତଂ ଶୌରିଣା
ତସ୍ମିନ୍ନୁଜ୍ଜ୍ୱଳଭକ୍ତିବର୍ତ୍ମନି ସୁଖଂ ଖେଳନ୍ତି ଗୌରପ୍ରିୟାଃ ॥୨୪॥

ପୁରାକାଳରେ ମହାମୁନିମାନଙ୍କର ମଧ୍ୟ ଯେଉଁ ବିଷୟରେ ଭ୍ରମ ହୋଇଥିଲା, ପୃଥିବୀ-ପୃଷ୍ଠରେ କାହାରି ବୁଦ୍ଧି ଯେଉଁଥିରେ କିଞ୍ଚିନ୍ମାତ୍ର ପ୍ରବେଶ କରି ପାରି ନାହିଁ, ଶ୍ରୀଶୁକଦେବ ମଧ୍ୟ ଯାହା ଜାଣିପାରି ନାହାନ୍ତି, **ଏପରିକି ପରମକରୁଣାମୟ ଶ୍ରୀକୃଷ୍ଣ ମଧ୍ୟ କେବେହେଲେ ନିଜଜନଙ୍କ ପ୍ରତି ମଧ୍ୟ ଯାହା ପ୍ରକାଶ କରି ନାହାନ୍ତି,** ଶ୍ରୀଗୌରାଙ୍ଗଙ୍କର ପ୍ରିୟଜନମାନେ ସେହି ଉଜ୍ଜ୍ୱଳଭକ୍ତିମାର୍ଗରେ ଆନନ୍ଦରେ ବିହାର କରୁଅଛନ୍ତି ।

ଭ୍ରାତଃ କୀର୍ତ୍ତୟ ନାମ ଗୋକୁଳପତେରୁଦ୍ଦାମନାମାବଳୀଂ
ଯଦ୍‌ବା ଭାବୟ ତସ୍ୟ ଦିବ୍ୟମଧୁରଂ ରୂପଂ ଜଗନ୍ମୋହନମ୍ ।
ହନ୍ତ ପ୍ରେମମହାରସୋଜ୍ଜ୍ୱଳପଦେ ନାଶାପି ତେ ସମ୍ଭବେତ୍
ଶ୍ରୀଚୈତନ୍ୟମହାପ୍ରଭୋର୍ଯଦି କୃପାଦୃଷ୍ଟିଃ ପତେନ୍ନ ତ୍ୱୟି ॥୨୭॥

ହେ ଭ୍ରାତଃ ! ତୁମେ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ଉଲ୍ଲାସମୟ ନାମସମୂହ କୀର୍ତ୍ତନ କର, ଅଥବା ତାହାଙ୍କର ବିଶ୍ୱମୋହନ ଅଲୌକିକ ସୁମଧୁର ସୌନ୍ଦର୍ଯ୍ୟର ଧ୍ୟାନ କର । କିନ୍ତୁ ଯଦି ତୁମ ପ୍ରତି ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର କୃପାଦୃଷ୍ଟିପାତ ହୋଇ ନାହିଁ, ତେବେ ତୁମର ପ୍ରେମରୂପକ ପରମ ଉଜ୍ଜ୍ୱଳରସର ଆସ୍ୱାଦନର କୌଣସି ଆଶା ମଧ୍ୟ ନାହିଁ ।

ଭୂତୋ ବା ଭବିତାପି ବା ଭବତି ବା କସ୍ୟାପି ଯଃ କୋଽପି ବା
ସମ୍ବନ୍ଧୋ ଭଗବତ୍-ପଦାମ୍ବୁଜରସେନାସ୍ମିନ୍ ଜଗନ୍ମଣ୍ଡଳେ ।
ତତ୍ ସର୍ବଂ ନିଜଭକ୍ତିରୂପ-ପରମୈଶ୍ୱର୍ଯ୍ୟେଣ ବିକ୍ରୀଡ଼ତୋ
ଗୌରସ୍ୟୈବ କୃପାବିଜୃମ୍ଭିତତୟା ଜାନନ୍ତି ନିର୍ମତ୍ସରାଃ ॥୨୮॥

ଏହି ଭୂମଣ୍ଡଳରେ ଯେ କୌଣସି ବ୍ୟକ୍ତିର ଶ୍ରୀକୃଷ୍ଣଙ୍କ ପାଦପଦ୍ମସ୍ଥିତ ମଧୁର ରସ ସହିତ ଯେକୌଣସିପ୍ରକାର ସମ୍ପର୍କ ହୋଇଛି, ହେବ ବା ବର୍ତ୍ତମାନ ରହିଛି, ମାତ୍ସର୍ଯ୍ୟହୀନ ସଜ୍ଜନମାନେ ଏହିସବୁକୁ ନିଜଭକ୍ତିରୂପକ ପରମ ଐଶ୍ୱର୍ଯ୍ୟଦ୍ୱାରା ବିହାରଶୀଳ ଶ୍ରୀଗୌରଚନ୍ଦ୍ରଙ୍କର ପରମ-କରୁଣାର ବିଳାସରୂପେ ହିଁ ଅବଗତ ହୋଇଥାନ୍ତି ।

ବିନା ବୀଜଂ କିଂ ନାଙ୍କୁରଜନନମନ୍ଧୋଽପି ନ କଥଂ
ପ୍ରପଶ୍ୟେନ୍ନୋ ପଙ୍ଗୁର୍ଗିରିଶିଖରମାରୋହତି କଥମ୍ ।
ଯଦି ଶ୍ରୀଚୈତନ୍ୟେ ହରିରସମୟାଶ୍ଚର୍ଯ୍ୟବିଭବେଽ-
ପ୍ୟଭକ୍ତାନାଂ ଭାବୀ କଥମପି ପରପ୍ରେମରଭସଃ ॥୩୨॥

ଶ୍ରୀକୃଷ୍ଣପ୍ରେମରୂପକ ବିଚିତ୍ର ବୈଭବଶାଳୀ ଶ୍ରୀଚୈତନ୍ୟଦେବଙ୍କ ଭଜନରହିତ ବ୍ୟକ୍ତିମାନଙ୍କର ଯଦି କୌଣସିପ୍ରକାରେ ପରମ ପ୍ରେମାବେଶ ସମ୍ଭବପର ହୁଏ, ତାହାହେଲେ ବୀଜ ବ୍ୟତୀତ ମଧ୍ୟ ଅଙ୍କୁରୋତ୍ପତ୍ତି ହେବ ନାହିଁ କାହିଁକି, ଅନ୍ଧ ରୂପ ଦର୍ଶନ କରିବ ନାହିଁ କାହିଁକି ଏବଂ ପଙ୍ଗୁ ପର୍ବତଶୃଙ୍ଗ ଆରୋହଣ କରିବ ନାହିଁ କାହିଁକି ?

ହା ହନ୍ତ ଚିତ୍ତଭୁବି ମେ ପରମୋଷରାୟାଂ
ସଭକ୍ତିକଳ୍ପଲତିକାଙ୍କୁରିତା କଥଂ ସ୍ୟାତ୍ ।
ହୃଦ୍ୟେକମେବ ପରମାଶ୍ୱସନୀୟମସ୍ତି
ଚୈତନ୍ୟନାମ କଲୟନ୍ନ ଭବାମି ଶୋଚ୍ୟଃ ॥୪୮॥

ହାୟ ହାୟ ! ମୋର ଏହି ଅତିଶୟ ଅନୁର୍ବର ହୃଦୟକ୍ଷେତ୍ରରେ କିପରି ପ୍ରେମଭକ୍ତିଲତା ଅଙ୍କୁରିତ ହେବ ? ତେବେ ମୋର ଗୋଟିଏମାତ୍ର ପରମ ଆଶ୍ୱାସର କାରଣ ଏହି ଯେ, ମୁଁ ଶ୍ରୀଚୈତନ୍ୟଙ୍କ ନାମର ସେବା କଲେ ଦୁର୍ଦ୍ଦଶାଗ୍ରସ୍ତ ହେବି ନାହିଁ ।

ରକ୍ଷୋଦୈତ୍ୟକୁଳଂ ହତଂ କିୟଦିଦଂ ଯୋଗାଦିବର୍ତ୍ମକ୍ରିୟା-
ମାର୍ଗୋ ବା ପ୍ରକଟୀକୃତଃ କିୟଦିଦଂ ସୃଷ୍ଟ୍ୟାଦିକଂ ବା କିୟତ୍ ।
ମେଦିନ୍ୟୁଦ୍ଧରଣାଦିକଂ କିୟଦିଦଂ ପ୍ରେମୋଜ୍ଜ୍ୱଳାୟା ମହା-
ଭକ୍ତେର୍ବର୍ତ୍ମକରୀଂ ପରାଂ ଭଗବତଶ୍ଚୈତନ୍ୟମୂର୍ତ୍ତିଂ ସ୍ତୁମଃ ॥୫୬॥

ଶ୍ରୀଭଗବାନଙ୍କର ଅନ୍ୟାନ୍ୟ ଅବତାରମାନେ ରାକ୍ଷସ ଓ ଦୈତ୍ୟକୁଳ ବିନଷ୍ଟ କରିଅଛନ୍ତି, ଏହା ବା ଅଧିକ କଅଣ ! ଯୋଗପ୍ରଭୃତି ମାର୍ଗ ବା କର୍ମମାର୍ଗର ପ୍ରକାଶ କରିଅଛନ୍ତି, ଏହା ବା ଅଧିକ କଅଣ ! ସୃଷ୍ଟିପ୍ରଭୃତି କାର୍ଯ୍ୟ ମଧ୍ୟ ସେମାନଙ୍କ ପକ୍ଷରେ ଅଧିକ କିଛି ନୁହେଁ, ପୃଥିବୀର ଉଦ୍ଧାରପ୍ରଭୃତି କାର୍ଯ୍ୟ ବା ଆଉ ବେଶି କଅଣ ! ପରନ୍ତୁ ପ୍ରେମୋଜ୍ଜ୍ୱଳା ଭକ୍ତିର ମାର୍ଗପ୍ରଦର୍ଶକ ବୋଲି ଭଗବାନ୍ ଶ୍ରୀଚୈତନ୍ୟରୂପକ ଉତ୍ତମ ବିଗ୍ରହଙ୍କୁ ହିଁ ଆମ୍ଭେମାନେ ବନ୍ଦନା କରୁଁ ।

ଆଚର୍ଯ୍ୟ ଧର୍ମଂ ପରିଚର୍ଯ୍ୟ ବିଷ୍ଣୁଂ ବିଚର୍ଯ୍ୟ ତୀର୍ଥାନି ବିଚାର୍ଯ୍ୟ ବେଦାନ୍ ।
ବିନା ନ ଗୌରପ୍ରିୟପାଦସେବାଂ ବେଦାଦି-ଦୁଷ୍ପ୍ରାପ୍ୟପଦଂ ବିଦନ୍ତି ॥୬୦॥

ଶ୍ରୀଗୌରାଙ୍ଗଙ୍କ ପ୍ରିୟଜନଙ୍କ ପାଦସେବା ବ୍ୟତୀତ ମାନବମାନେ ଧର୍ମାଚରଣ, ଶ୍ରୀବିଷ୍ଣୁଙ୍କ ପରିଚର୍ଯ୍ୟା, ତୀର୍ଥ ପର୍ଯ୍ୟଟନ ଓ ବେଦସମୂହର ଅର୍ଥ ବିଚାର କରି ମଧ୍ୟ ବେଦ ପ୍ରଭୃତିର ଦୁର୍ଲ୍ଲଭ ପରମ ବସ୍ତୁକୁ ଜାଣି ପାରନ୍ତି ନାହିଁ ।

ମୃଗ୍ୟାପି ସା ଶିବ-ଶୁକୋଦ୍ଧବ-ନାରଦାଦ୍ୟୈରାଶ୍ଚର୍ଯଭକ୍ତିପଦବୀ ନ ଦବୀୟସୀ ନଃ ।
ଦୁର୍ବୋଧ-ବୈଭବପତେ ମୟି ପାମରେଽପି ଚୈତନ୍ୟଚନ୍ଦ୍ର ଯଦି ତେ କରୁଣାକଟାକ୍ଷଃ ॥୬୨॥

ହେ ଦୁର୍ଜ୍ଞେୟ ବୈଭବସମୂହର ଅଧୀଶ୍ୱର ଶ୍ରୀଚୈତନ୍ୟଚନ୍ଦ୍ର ! ମାଦୃଶ ଏହି ପାମର ବ୍ୟକ୍ତି ପ୍ରତି ଯଦି ତୁମର କୃପାଦୃଷ୍ଟି ହୁଏ, ତାହାହେଲେ ଶିବ, ଶୁକଦେବ, ଉଦ୍ଧବ ଓ ନାରଦ ପ୍ରଭୃତିଙ୍କର ପ୍ରାର୍ଥନୀୟ ସେହି ସୁପ୍ରସିଦ୍ଧ ଆଶ୍ଚର୍ଯ୍ୟମୟ ଭକ୍ତିପଦ ମଧ୍ୟ ଆମ୍ଭମାନଙ୍କର ଦୂରବର୍ତ୍ତୀ ବୋଲି ମନେ ହୁଏ ନା ।

ପାତ୍ରାପାତ୍ରବିଚାରଣଂ ନ କୁରୁତେ ନ ସ୍ୱଂ ପରଂ ବୀକ୍ଷତେ
ଦେୟାଦେୟ-ବିମର୍ଶକୋ ନ ହି ନ ବା କାଳପ୍ରତୀକ୍ଷଃ ପ୍ରଭୁଃ ।
ସଦ୍ୟୋ ଯଃ ଶ୍ରବଣେକ୍ଷଣ-ପ୍ରଣମନ-ଧ୍ୟାନାଦିନା ଦୁର୍ଲ୍ଲଭଂ
ଦତ୍ତେ ଭକ୍ତିରସଂ ସ ଏବ ଭଗବାନ୍ ଗୌରଃ ପରଂ ମେ ଗତିଃ ॥୧୧୨॥

ଯେଉଁ ପ୍ରଭୁ ପାତ୍ର ଓ ଅପାତ୍ର ବିଚାର କରନ୍ତି ନାହିଁ, ନିଜ ବା ପର ବୋଲି କାହାକୁ ଦେଖନ୍ତି ନାହିଁ, ଦେୟ ବା ଅଦେୟ ବିଚାର କରନ୍ତି ନାହିଁ କିଂବା କୌଣସି କାଳବିଶେଷର ମଧ୍ୟ ଅପେକ୍ଷା କରନ୍ତି ନାହିଁ, ପରନ୍ତୁ ଯେ ସଦ୍ୟ ହିଁ ଶ୍ରବଣ, ଦର୍ଶନ, ପ୍ରଣତି ଓ ଧ୍ୟାନାଦିଦ୍ୱାରା ମଧ୍ୟ ଦୁର୍ଲଭ ପ୍ରେମ ପ୍ରଦାନ କରନ୍ତି, ସେହି ଭଗବାନ୍ ଶ୍ରୀଗୌରାଙ୍ଗଦେବ ହିଁ ମୋର ଏକମାତ୍ର ଆଶ୍ରୟ ।

ଦନ୍ତେ ନିଧାୟ ତୃଣକଂ ପଦୟୋର୍ନିପତ୍ୟ
କୃତ୍ୱା ଚ କାକୁଶତମେତଦହଂ ବ୍ରବୀମି ।
ହେ ସାଧବଃ ସକଳମେବ ବିହାୟ ଦୂରାଦ୍-
ଗୌରାଙ୍ଗଚନ୍ଦ୍ରଚରଣେ କୁରୁତାନୁରାଗମ୍ ॥୧୨୦॥

ହେ ସଜ୍ଜନଗଣ ! ମୁଁ ଦନ୍ତରେ ତୃଣଧାରଣପୂର୍ବକ ପଦଯୁଗଳରେ ପତିତ ହୋଇ ଶତ ଶତ କାତର ବଚନ ଉଚ୍ଚାରଣ କରି ଏହା ହିଁ କହୁଛି ଯେ, ଅନ୍ୟ ସବୁ ବିଷୟ ଦୂରକୁ ତ୍ୟାଗ କରି ଶ୍ରୀଗୌରପାଦପଦ୍ମପ୍ରତି ଆସକ୍ତ ହୁଅ ।

ଅହୋ ନ ଦୁର୍ଲ୍ଲଭା ମୁକ୍ତିର୍ନ ଚ ଭକ୍ତିଃ ସୁଦୁର୍ଲ୍ଲଭା ।
ଗୌରଚନ୍ଦ୍ରପ୍ରସାଦସ୍ତୁ ବୈକୁଣ୍ଠେଽପି ସୁଦୁର୍ଲ୍ଲଭଃ ॥୧୨୨॥

ଅହୋ ! ମାନବମାନଙ୍କ ପକ୍ଷରେ ମୁକ୍ତି ଦୁର୍ଲ୍ଲଭ ନୁହେଁ, ଭକ୍ତି ମଧ୍ୟ ସୁଦୁର୍ଲ୍ଲଭ ନୁହେଁ, କିନ୍ତୁ ଶ୍ରୀଗୌରଚନ୍ଦ୍ରଙ୍କ ଅନୁଗ୍ରହ ଶ୍ରୀବୈକୁଣ୍ଠଧାମରେ ମଧ୍ୟ ପରମ ଦୁର୍ଲ୍ଲଭ ।

## ଶ୍ରୀଗୌରଭଜନର ବୈଶିଷ୍ଟ୍ୟ ସମ୍ବନ୍ଧରେ ଶ୍ରୀଳ ପୁରୀଦାସ ଗୋସ୍ୱାମୀ ଠାକୁରଙ୍କ ଉକ୍ତି

ଶ୍ରୀଳ ପୁରୀଦାସ ଗୋସ୍ୱାମୀ ଠାକୁର ମଧ୍ୟ ଆମ ଭଳି କର୍ମାଧିକାରୀ ଅଜାତରତି ଜୀବକୁ ଶ୍ରୀଳ ହରିଦାସ ଠାକୁର, ଶ୍ରୀଳ କୃଷ୍ଣଦାସ କବିରାଜ ଗୋସ୍ୱାମୀ, ଶ୍ରୀଳ ସାର୍ବଭୌମ ଭଟ୍ଟାଚାର୍ଯ, ଶ୍ରୀଳ ପ୍ରବୋଧାନନ୍ଦ ସରସ୍ୱତୀପାଦ ଓ ଶ୍ରୀଳ ନରୋତ୍ତମ ଠାକୁର ମହାଶୟଙ୍କ ପଦାଙ୍କ ଅନୁସରଣରେ ସର୍ବକ୍ଷଣ କାନ୍ଦି କାନ୍ଦି ଉଚ୍ଚସ୍ୱରରେ ଶ୍ରୀଗୌରନାମକୀର୍ତ୍ତନର ହିଁ ଉପଦେଶ

ଦେଇଛନ୍ତି । ତାଙ୍କ ଶେଷ ଜୀବନରେ ଅଧିକାଂଶ ସମୟରେ ସେ ନାନା ସୁମଧୁର ସ୍ୱରରେ ପରମ ଆବେଶ ସହକାରେ ଶ୍ରୀଗୌରହରିଙ୍କ ଲୀଳା ସହିତ ସଂଯୁକ୍ତ କରି ''ଶ୍ରୀକୃଷ୍ଣଚୈତନ୍ୟ ଶଚୀସୁତ ଗୌରଗୁଣଧାମ'' ନାମ ଚକ୍ଷୁଜଳରେ ବକ୍ଷ ସିକ୍ତ କରି କୀର୍ତ୍ତନ କରୁଥିଲେ । ସେ ତାଙ୍କ ଅନୁଗତ ସମସ୍ତଙ୍କୁ ଏହି ଶ୍ରୀଗୌରନାମ ସର୍ବକ୍ଷଣ କୀର୍ତ୍ତନ କରିବାକୁ ଉପଦେଶ ଦେଇଛନ୍ତି । ସେ କହିଛନ୍ତି ଯେ, ଶ୍ରୀଗୌରନାମକୀର୍ତ୍ତନଦ୍ୱାରା ଅନର୍ଥନିବୃତ୍ତି ଓ ଅର୍ଥପ୍ରବୃତ୍ତି ଏକ ସଙ୍ଗରେ ହିଁ ହେବ ।

ତାଙ୍କ ଅପ୍ରକଟ ସମୟରେ ତାଙ୍କ ଅନୁଗତମାନଙ୍କ ପ୍ରତି ତାଙ୍କର ଏହି ଅନ୍ତିମ ଉପଦେଶ– ''ସମସ୍ତଙ୍କ ସଙ୍ଗରେ ତ ଦେଖା ହେଲା ନାହିଁ । ସମସ୍ତଙ୍କୁ କହିଦେବ 'ଶ୍ରୀକୃଷ୍ଣଚୈତନ୍ୟ ଶଚୀସୁତ ଗୌରଗୁଣଧାମ' ଓ 'ଶ୍ରୀଶ୍ରୀନିତାଇ-ଗୌର-ସୀତାନାଥ' ଏହି ନାମ ସର୍ବକ୍ଷଣ ଚକ୍ଷୁଜଳରେ ବକ୍ଷ ସିକ୍ତ କରି କୀର୍ତ୍ତନ କରିବେ । ସେମାନେ ନିଶ୍ଚୟ କୃପା କରିବେ ।'' ଏତିକି କହିବା ସଙ୍ଗେ ସଙ୍ଗେ ସେ ତାଙ୍କ ପ୍ରକଟଲୀଳା ସାଙ୍ଗ କଲେ । ତାଙ୍କ ଦ୍ୱାରା କୀର୍ତ୍ତିତ ଲୀଳାସୂଚକ ଶ୍ରୀଗୌରନାମ ଗୋଟିଏ ସ୍ୱତନ୍ତ୍ର ପୁସ୍ତିକାରେ ପ୍ରକାଶିତ ହୋଇଛନ୍ତି ।

## ଶ୍ରୀଗୌର ଆରାଧନାରେ ଆଶୁ ପ୍ରେମପ୍ରାପ୍ତି

ଶ୍ରୀଗୌରଚନ୍ଦ୍ରଙ୍କ ଅପାର କରୁଣା କଥା ଯାହା ଶ୍ରୀଳ କୃଷ୍ଣଦାସ କବିରାଜ ଗୋସ୍ୱାମୀ, ଶ୍ରୀଳ ପ୍ରବୋଧାନନ୍ଦ ସରସ୍ୱତୀପାଦ, ଶ୍ରୀଳ ନରୋତ୍ତମ ଠାକୁର ଓ ଶ୍ରୀଳ ପୁରୀଦାସ ଗୋସ୍ୱାମୀ ଠାକୁର ଉଲ୍ଲେଖ କରି ଯାଇଛନ୍ତି, ତାହା ଶୁଣିଲ ତ ! କି ଅପୂର୍ବ ତାଙ୍କ ମହିମା ! ସେ ସାଧକର କୌଣସି ଯୋଗ୍ୟତାର ଅପେକ୍ଷା କରନ୍ତି ନାହିଁ । ସର୍ବସାଧନହୀନ, ସର୍ବବିଷୟରେ ଅଯୋଗ୍ୟ, ମହାପାପୀ ମଧ ଯଦି ବ୍ୟାକୁଳ ହୃଦୟରେ ତାଙ୍କୁ ଡାକିବ, ସେ ଏହି ଜନ୍ମରେ ହିଁ ବ୍ରହ୍ମାଦିଙ୍କର ଦୁର୍ଲ୍ଲଭ ଶ୍ରୀକୃଷ୍ଣପ୍ରେମ ତାକୁ ଦେଇଦେବେ । ତାଛଡ଼ା ନାମ-ନାମୀ ଅଭିନ୍ନ ହୋଇଥିବାରୁ ଶ୍ରୀଗୌରଚନ୍ଦ୍ର ଶ୍ରୀରାଧାଭାବରେ ବିଭାବିତ ହୋଇ ଶ୍ରୀକୃଷ୍ଣପ୍ରେମ ଲାଭ ହୋଇ ପାରିଲା ନାହିଁ ବୋଲି ସର୍ବକ୍ଷଣ ଯେଉଁ ବ୍ୟାକୁଳ ଭାବ ପ୍ରକାଶ କରୁଥିଲେ, ସେହି ବ୍ୟାକୁଳତା ତାଙ୍କ ନାମରେ ମଧ ଅଛି । ତେଣୁ ତାଙ୍କ ନାମ କୀର୍ତ୍ତନ କଲେ ସେହି ନାମପ୍ରଭାବରେ ସେହି ବିରହାତ୍ମକ ଭାବ ତୁମ ହୃଦୟରେ ମଧ ସଞ୍ଚାରିତ ହେବ । **ଯେଉଁ ଭକ୍ତିବାସନା ମହତ୍‌କୃପାରୁ ମିଳେ, ତାହା ଶ୍ରୀଗୌରନାମରୁ ମଧ ମିଳି ପାରିବ । ସୁତରାଂ ଶ୍ରୀଗୌର-ନାମ-କୀର୍ତ୍ତନର ଉପାଦେୟତା ଯେ କେତେ ଅଧିକ, ତାହା ବର୍ଣ୍ଣନା କରିବାର ଭାଷା ନାହିଁ ।**

ଶ୍ରୀଗୌରସୁନ୍ଦର ଯେ ସ୍ୱୟଂରୂପ ଶ୍ରୀକୃଷ୍ଣ, ଏହା ନିଃସନ୍ଦେହ । ସେ କେବଳ ସ୍ୱୟଂରୂପ ନୁହନ୍ତି, ସେହି ସ୍ୱୟଂରୂପ ପୁଣି ଯାହାଙ୍କ ଅମଳପ୍ରେମରେ ନିତ୍ୟବଶୀଭୂତ, ସେହି ଘନୀଭୂତ ପ୍ରେମର ମୂର୍ତ୍ତି ସ୍ୱୟଂରୂପା ଶ୍ରୀରାଧାଙ୍କ ଭାବରେ ବିଭାବିତ ସ୍ୱୟଂରୂପ । ସେହି ଶ୍ରୀରାଧାଭାବ-ବିଭାବିତ ହୋଇଥିବାରୁ ହିଁ ସେ ନିର୍ବିଚାରରେ କୌଣସି ସାଧନର ଅପେକ୍ଷା ନ କରି ଯାହାକୁ ଇଚ୍ଛା ତାକୁ ପ୍ରେମ ଦେଇଗଲେ । **ତାଙ୍କର ଅଂଶାବତାର ଶ୍ରୀରାମଚନ୍ଦ୍ର ଓ ଶ୍ରୀନୃସିଂହ ଇତ୍ୟାଦିଙ୍କ ଉପାସନା କରି ଯଦି ଜୀବର ଅଭୀଷ୍ଟ ସିଦ୍ଧ ହୋଇପାରିଲା, ତେବେ**

**ପ୍ରେମଲାଭର ବାସନା ନେଇ କେବଳ ସେଇ ପ୍ରେମଦାତା ଶ୍ରୀଗୌରହରିଙ୍କୁ ଆରାଧନା କଲେ କଅଣ ଜୀବ ପ୍ରେମ ପାଇ ପାରିବ ନାହିଁ ?** ଏହାର ଉତ୍ତରରେ କହିବି ଯେ, ଯେଉଁ ଶ୍ରୀଗୌର ଶ୍ରୀରାଧାଭାବ-ବିଭାବିତ ଶ୍ରୀକୃଷ୍ଣ, ତାଙ୍କ ଭଜନ କଲେ ଶ୍ରୀକୃଷ୍ଣଭଜନ ଅପେକ୍ଷା ଅତି ଅଳ୍ପ ସମୟରେ ଓ ସହଜରେ ପ୍ରେମଲାଭ ହେବା ନିଶ୍ଚିତ । ତାଙ୍କ ଭଜନ ଅର୍ଥ ତାଙ୍କର ଷୋଡ଼ଶୋପଚାର ପୂଜା ନୁହେଁ, କେବଳ ତାଙ୍କର ଓ ତାଙ୍କ ନିଜଜନଙ୍କ କୃପାଲାଭ ପାଇଁ ବ୍ୟାକୁଳ ହୋଇ ଅନୁକ୍ଷଣ ''ହା ଗୌର-ନିତାଇ'' ବୋଲି ବୁକୁଫଟା କ୍ରନ୍ଦନ । ''ବାଳାନାଂ ରୋଦନଂ ବଳମ୍'' । ଅର୍ଥାତ୍ ଶିଶୁ ସର୍ବତୋଭାବରେ ଅସମର୍ଥ । ଈପ୍‌ସିତ ବସ୍ତୁପ୍ରାପ୍ତି ସମ୍ବନ୍ଧରେ ତାହାର ଏହି ଅସାମର୍ଥ୍ୟ ବା ଅଯୋଗ୍ୟତା ତୀବ୍ରଭାବରେ ଉପଲବ୍ଧି କରି ସେ କେବଳ କ୍ରନ୍ଦନ ହିଁ କରେ ଏବଂ ତାହାର କ୍ରନ୍ଦନଧ୍ୱନି ସ୍ନେହଶୀଳା ମାତାଙ୍କର କର୍ଣ୍ଣପଥଗତ ହେଲେ ସେ ତତ୍‌କ୍ଷଣାତ୍ ଶିଶୁ ନିକଟକୁ ଦୌଡ଼ି ଆସି ତା'ର ଈପ୍‌ସିତ ବସ୍ତୁ ଦାନ କରି ତାକୁ ଶାନ୍ତ କରାନ୍ତି । ସେହିପରି ହ୍ଲାଦିନୀ ଶକ୍ତିର ବୃତ୍ତିରୂପା ଭକ୍ତିବାସନା ଯେ ତଟସ୍ଥଶକ୍ତିପ୍ରସୂତ ଜୀବ-ହୃଦୟରେ ଜାଗିବା ଅସମ୍ଭବ, ଏହା ଉପଲବ୍ଧି କରି ଯେ ଭକ୍ତିଲାଭ ବିଷୟରେ ନିଜର ଅଯୋଗ୍ୟତା ମର୍ମେ ମର୍ମେ ଅନୁଭବ କରିବ, ତାର କ୍ରନ୍ଦନ ଛଡ଼ା ଆଉ କଅଣ ଉପାୟ ଅଛି ? ବସ୍ତୁତଃ ଶ୍ରୀଶ୍ରୀଗୌରନିତ୍ୟାନନ୍ଦ ଏହି କ୍ରନ୍ଦନରୂପକ ଆରାଧନାର ପଥ ହିଁ ଜଗଦ୍‌ବାସୀଙ୍କୁ ଦେଖାଇ ଯାଇଛନ୍ତି । କାରଣ ସେମାନେ ଦେଖିଲେ, କଳିହତ ଜୀବ ଜଡ଼ାଭିମାନ, ଜଡ଼ାଭିନିବେଶ ଓ ଜନ୍ମଜନ୍ମାନ୍ତରର ଅପରାଧପୁଞ୍ଜରୁ ମୁକ୍ତ ହୋଇ ଯେ ଭଜନ କରିବ, ସେ ଆଶା ନାହିଁ । ତେଣୁ ଅଯୋଗ୍ୟ ପକ୍ଷରେ ଯାହା ଉପଲବ୍ଧି କରିବା ଏକାନ୍ତ ସ୍ୱାଭାବିକ, ସେହି ଅଯୋଗ୍ୟତାର ଅନୁଭୂତି ଓ ତାହାର ଅଭୀଷ୍ଟଦେବଙ୍କ ଔଦାର୍ଯ୍ୟଗୁଣର ସ୍ମୃତିରେ ପୁଲକ ଓ ଅଶ୍ରୁର ଉଦ୍‌ଗମରୂପକ ପରମ ମଙ୍ଗଳଲାଭର ପଥ ହିଁ ସେମାନେ ଆବିଷ୍କାର କରିଯାଇଛନ୍ତି । ବସ୍ତୁତଃ ଶିଶୁର କ୍ରନ୍ଦନ ମାତାର ହୃଦୟକୁ ବିଗଳିତ କଲା ଭଳି ସାଧକର ନିଜ ଅଯୋଗ୍ୟତାର ତୀବ୍ର ଅନୁଭୂତିରୁ ଯେଉଁ ଅଶ୍ରୁର ଉଦ୍‌ଗମ ହୁଏ, ତାହା ଅଜିତଙ୍କୁ ଜୟ କରେ, ସର୍ବତନ୍ତ୍ରସ୍ୱତନ୍ତ୍ରଙ୍କୁ ହୃଦୟରେ ଅବରୁଦ୍ଧ କରେ, ପୂର୍ଣ୍ଣତମ ନିରପେକ୍ଷଙ୍କୁ ମଧ୍ୟ ସାପେକ୍ଷତମ ଅର୍ଥାତ୍ ଦୀନବତ୍ସଳ କରି ପକାଏ । ଅଶ୍ରୁର ଏପରି ପ୍ରଭାବ ଯେ, ସ୍ୱୟଂ ଭଗବାନ୍ ନିଜକୁ ପୂର୍ଣ୍ଣଭାବରେ ଦେଇ ମଧ୍ୟ ପୁଣି ଭକ୍ତଠାରେ ନିଜକୁ ଋଣୀ ବୋଲି ଅଭିମାନ କରନ୍ତି । କ୍ରନ୍ଦନର କି ଅଦ୍ଭୁତ ପ୍ରଭାବ ବୁଝିଲ ତ ! ଏହି କ୍ରନ୍ଦନରୂପକ ସାଧନର ପଥ ଶ୍ରୀଶ୍ରୀଗୌରନିତ୍ୟାନନ୍ଦଙ୍କର ହିଁ ଆବିଷ୍କାର ଏବଂ ଏହି କ୍ରନ୍ଦନଦ୍ୱାରା ହିଁ ଅନାୟାସରେ ସେମାନଙ୍କୁ ଲାଭ କରି ହେବ ।

**ସୁବଳ**—ଆଜ୍ଞା, ଶ୍ରୀଶ୍ରୀଗୌରନିତ୍ୟାନନ୍ଦଙ୍କ ମହିମା ଆପଣ ଯେପରି ଭାବାବିଷ୍ଟ ହୋଇ କହିଗଲେ, ମୁଁ ତ ସେସବୁ ଶୁଣି ସ୍ତବ୍ଧ ହୋଇଗଲି । ବାସ୍ତବିକ କି ଅପୂର୍ବ ସେ ମହିମା ! ଆପଣ ଯାହା କହିଲେ ସେ ମହିମା ଯେ ବର୍ଣ୍ଣନା କରିବାର ଭାଷା ନାହିଁ, ଏହା ଅକ୍ଷରେ ଅକ୍ଷରେ ସତ୍ୟ । ଆଜ୍ଞା, ମୋ ପରି ଜନ୍ମଜନ୍ମାନ୍ତରର ଦୁରନ୍ତ ଅପରାଧୀ, ନାନାଦୁର୍ବାସନାଗ୍ରସ୍ତ ହତଭାଗା କଅଣ କେବେ ତାଙ୍କ କୃପାର ପାତ୍ର ହୋଇପାରିବ ? ଚିତ୍ତ ତ ଜନ୍ମଜନ୍ମାନ୍ତରର

ଅପରାଧଫଳରେ ବଜ୍ର ଭଳି କଠିନ ହୋଇଯାଇଛି । ସାମାନ୍ୟତମ ଭକ୍ତିସାଧନର ଅଭିନୟ କଲେ ମଧ୍ୟ ଅଭାବବୋଧ ପରିବର୍ତ୍ତେ ତୃପ୍ତି ଆସିଯାଉଛି । ଏପରି ଅବସ୍ଥାରେ ଅଯୋଗ୍ୟତାର ତୀବ୍ର ଅନୁଭୂତି ବା ଆସିବ କିପରି ? ନିଜ ଅଯୋଗ୍ୟତା ତୀବ୍ର ଭାବରେ ଅନୁଭୂତ ନ ହେଲେ ଚକ୍ଷୁରେ ଅଶ୍ରୁ ବା ଆସିବ କିପରି ? ସୁତରାଂ ଶ୍ରୀଶ୍ରୀଗୌର-ନିତ୍ୟାନନ୍ଦଙ୍କ ଭଜନ ମୋ ଭଳି କଠିନହୃଦୟ ଜୀବପକ୍ଷରେ ସମ୍ଭବ ବୋଲି ମୁଁ ଉପଲବ୍ଧି କରିପାରୁ ନାହିଁ ।

**ବାବାଜୀ ମହାରାଜ**—ସୁବଳ ! ତୁମେ ହତାଶ ହୁଅ ନା । ରଜସ୍ତମୋଗୁଣାବିଷ୍ଟ କର୍ମାଧିକାରୀ ଜୀବ ପାଇଁ ଶ୍ରୀଳ କୃଷ୍ଣଦାସ କବିରାଜ ଗୋସ୍ୱାମୀ ପ୍ରଭୁ ଯେଉଁ ଅପୂର୍ବ ସନ୍ଦେଶ ଦେଇ ଯାଇଛନ୍ତି, ତାହା ଶୁଣିଲେ ତୁମ ନିରାଶ ହୃଦୟରେ ମଧ୍ୟ ଅସୀମ ଆଶାର ସଞ୍ଚାର ହେବ ।

**ସୁବଳ**—(ଉତ୍କଣ୍ଠିତ ହୋଇ) ଆଜ୍ଞା, ତାହା କଅଣ ଦୟା କରି କହି ମୋ ତାପିତ ପ୍ରାଣକୁ ଶୀତଳ କରନ୍ତୁ ।

**ବାବାଜୀ ମହାରାଜ**—ଶ୍ରୀଶ୍ରୀଗୌରନିତ୍ୟାନନ୍ଦ ପତିତ ଦୁରିତ ଜୀବକୁ କିପରି କୃପା କରନ୍ତି, ସେ ବିଷୟ ଶ୍ରୀଳ କୃଷ୍ଣଦାସ କବିରାଜ ଗୋସ୍ୱାମୀ ପ୍ରଭୁ ତାଙ୍କ ଲେଖନୀରେ ଏହିପରିଭାବରେ ବ୍ୟକ୍ତ କରିଛନ୍ତି—

''ଦୁଇ ଭାଇ ହୃଦୟେର କ୍ଷାଲି ଅନ୍ଧକାର ।
ଦୁଇ ଭାଗବତ ସଙ୍ଗେ କରାନ ସାକ୍ଷାତ୍‌କାର ॥
ଏକ ଭାଗବତ ବଡ଼—ଭାଗବତଶାସ୍ତ୍ର ।
ଆର ଭାଗବତ—ଭକ୍ତ ଭକ୍ତିରସପାତ୍ର ॥
ଦୁଇ ଭାଗବତଦ୍ୱାରା ଦିୟା ଭକ୍ତିରସ ।
ତାହାର ହୃଦୟେ ତା'ର ପ୍ରେମେ ହୟ ବଶ ॥''

(ଶ୍ରୀଚୈ:ଚ:ଆଦି ୧।୯୬-୯୮)

ଅର୍ଥାତ୍ ଶ୍ରୀଗୌର ଓ ଶ୍ରୀନିତ୍ୟାନନ୍ଦ, ଏହି ଦୁଇ ଭାଇ ବିମୁଖ ଜୀବର କୃଷ୍ଣବିସ୍ମୃତିରୂପକ ଅଜ୍ଞାନାନ୍ଧକାର ଦୂର କରି ଭକ୍ତିପ୍ରତିପାଦକ ଶ୍ରୀମଦ୍‌ଭାଗବତାଦି ଶାସ୍ତ୍ର ଓ ଭକ୍ତିରସର ଆଧାର ଭକ୍ତଭାଗବତଙ୍କ ସଙ୍ଗରେ ତାହାର ସାକ୍ଷାତ୍‌କାର କରାନ୍ତି । ଏହି ଭକ୍ତଭାଗବତଙ୍କ ସଙ୍ଗ ଓ କୃପା ଏବଂ ତାଙ୍କ ଶ୍ରୀମୁଖରୁ ଶ୍ରୀମଦ୍‌ଭାଗବତାଦି ଶାସ୍ତ୍ର-ଶ୍ରବଣ ଫଳରେ ଶ୍ରୀକୃଷ୍ଣଙ୍କ ସେବା କରି ତାଙ୍କୁ ସୁଖୀ କରିବାର ବାସନା ଅର୍ଥାତ୍ ପ୍ରେମ ଜୀବ-ହୃଦୟରେ ଜାତ ହୁଏ । ପ୍ରୀତିରସଲୋଲୁପ ଶ୍ରୀକୃଷ୍ଣାଭିନ୍ନ ଶ୍ରୀଗୌରସୁନ୍ଦର ଓ ଶ୍ରୀଗୌରଦାତା ଶ୍ରୀନିତ୍ୟାନନ୍ଦ ପ୍ରଭୁ ତାହା ହୃଦୟର ସେହି ପ୍ରେମରସ ଆସ୍ୱାଦନ କରିବାକୁ ଯାଇ ତହିଁରେ ବନ୍ଦୀ ହୋଇଯାଆନ୍ତି । ସେମାନଙ୍କର ଏହି ପରମୋଦାରତାର ମହିମାଜ୍ଞାନ ଯାହା ହୃଦୟରେ ସ୍ଫୂର୍ତ୍ତିପ୍ରାପ୍ତ ହେବ, ସେ ଅବଶ୍ୟ ସେମାନଙ୍କ କୃପାଲାଭ ବିଷୟରେ ନିଜ ଅଯୋଗ୍ୟତା ଉପଲବ୍ଧି କରିବ ଏବଂ ସେତେବେଳେ ତାହାର ଚକ୍ଷୁରେ ଅଶ୍ରୁ ନ ଆସି ରହି ପାରିବ ନାହିଁ । ଯାହାର ଏତିକି ହେବ

ନାହିଁ, ସେ ନିଶ୍ଚିତରୂପେ ଶ୍ରୀଶ୍ରୀଗୌରନିତ୍ୟାନନ୍ଦଙ୍କୁ ଇଷ୍ଟଦେବରୂପେ ବରଣ କରିବାକୁ ଚାହିଁ ନାହିଁ; କେବଳ ନିଜର କୌଣସି ସ୍ୱାର୍ଥସିଦ୍ଧି ଉଦ୍ଦେଶ୍ୟରେ ହିଁ ସେମାନଙ୍କର ଭଜନର ଅଭିନୟମାତ୍ର କରୁଛି ବୋଲି ଜାଣିବାକୁ ହେବ ।

ଶ୍ରୀଶ୍ରୀଗୌରନିତ୍ୟାନନ୍ଦଙ୍କ ମହିମା କି ଅପାର ! ସେମାନଙ୍କର କି ବଦାନ୍ୟତା ! ସେମାନେ ପତିତ ଦୁରିତ ଜୀବ ସଙ୍ଗରେ ତାଙ୍କ ନିଜଜନଙ୍କ ସାକ୍ଷାତ୍କାର କରାଇ ଦେଇ ତାଙ୍କରି ଦ୍ୱାରା ତା' ହୃଦୟର ଭକ୍ତିବିପରୀତ ବାସନା ଦୂର କରାଇ ତହିଁରେ ଭକ୍ତିବାସନା ସୃଷ୍ଟି କରନ୍ତି ଏବଂ ସେହି ଭକ୍ତିବାସନା ବା ପ୍ରେମ ଆସ୍ୱାଦନ କରିବାକୁ ଯାଇ ନିଜେ ତହିଁରେ ବନ୍ଦୀ ହୋଇ ଯାଆନ୍ତି । କି ଅପୂର୍ବ ସେମାନଙ୍କର ଦାନ ! ସେମାନଙ୍କର ସର୍ବସ୍ୱ ଜୀବକୁ ଦାନ କରି ଦେଇ ପୁଣି ତା' ପାଖରେ ହାତ ପତାନ୍ତି ! ଏପରି ଦାତା ଆଉ କେଉଁ ଅବତାରରେ ହୋଇଛନ୍ତି କି ?

"ହେ ପ୍ରଭୋ ! ମୋର ସାଧନ-ଭଜନ କିଛି ନାହିଁ କିଂବା ଚେଷ୍ଟା କରି କେବେ ନିଜକୁ ସାଧନର ଯୋଗ୍ୟ କରିପାରିବି, ତାହା ମଧ୍ୟ ଅସମ୍ଭବ । କାରଣ ରଜସ୍ତମୋଗୁଣ-ନିଗଡ଼ରେ ବନ୍ଧା ହୋଇଥିବାହେତୁ ମୁଁ ସର୍ବଦା ନିଜସୁଖଚିନ୍ତାରେ ମଗ୍ନ । ଏପରି ଅବସ୍ଥାରେ ମୁଁ ଅନନ୍ୟୋପାୟ । ତୁମେ ଯଦି କୃପା କରି ତୁମ ନିଜଜନଙ୍କ ସଙ୍ଗରେ ଏ ଅଧମର ସାକ୍ଷାତ୍କାର କରାଇ ଦେବ, ତାହାହେଲେ ତାଙ୍କରି କୃପାରୁ ଏ ନରାଧମ ସ୍ୱସୁଖବାସନାରୂପକ ରାକ୍ଷସ ହାତରୁ ଉଦ୍ଧାର ଲାଭ କରି ତୁମ ସୁଖଚିନ୍ତାରେ ତତ୍ପର ହୋଇପାରିବ ।" ଏହିପରି ପ୍ରାର୍ଥନା କରି ଶ୍ରୀଗୌରନିଜଜନଙ୍କ କୃପାଲାଭ ଉଦ୍ଦେଶ୍ୟରେ ବ୍ୟାକୁଳ ହୋଇ ସତତ କାନ୍ଦି କାନ୍ଦି ଶ୍ରୀଶ୍ରୀଗୌରନିତ୍ୟାନନ୍ଦଙ୍କୁ ଡାକିଲେ ସେମାନେ ଅଚିରେ ସେମାନଙ୍କ ନିଜଜନଙ୍କ ସଙ୍ଗରେ ତୁମର ସାକ୍ଷାତ୍କାର କରାଇଦେବେ ଏବଂ ସେହି ଶ୍ରୀଗୌରନିଜଜନଙ୍କ ସଙ୍ଗ ଓ କୃପାଫଳରେ ତୁମ ହୃଦୟରୁ ସ୍ୱସୁଖବାସନା ସମ୍ପୂର୍ଣ୍ଣ ଦୂର ହୋଇ ସେମାନଙ୍କ ପ୍ରୀତିସମ୍ପାଦନ ଉଦ୍ଦେଶ୍ୟରେ ନିଜର ସମସ୍ତ ସ୍ୱାର୍ଥକୁ ତିଳେ ତିଳେ ଜଳାଞ୍ଜଳି ଦେବାର ପ୍ରେରଣା ଲାଭ ହେବ । ଶ୍ରୀଗୌରାନୁଗ ମହତଙ୍କ କୃପା ବ୍ୟତୀତ ଏହିପରି ସ୍ୱାର୍ଥତ୍ୟାଗର ବାସନା ଅନ୍ୟ କୌଣସି ସାଧନଦ୍ୱାରା ଜୀବ ହୃଦୟରେ ସଞ୍ଚାରିତ ହୋଇ ପାରିବ ନାହିଁ ।

ସେହି ଶ୍ରୀଗୌରାନୁଗ ମହତ୍‌ମାନଙ୍କର ଶ୍ରୀଗୌରସୁନ୍ଦରଙ୍କ ପ୍ରତି ଯେଉଁ ସୁଖାନୁସନ୍ଧାନାବେଶ ଏବଂ ଶ୍ରୀଗୌରସୁନ୍ଦରଙ୍କର ସେମାନଙ୍କ ପ୍ରତି ଯେଉଁ ବଶ୍ୟତା, ନାମ-ନାମୀଙ୍କ ଅଭିନ୍ନତା ହେତୁ ତାହା ସେହି ନାମରେ ମଧ୍ୟ ଅଛି । ଆବେଶ ସହକାରେ ସେହି ନାମ କୀର୍ତ୍ତନ କଲେ ସେହି ସେହି ଭକ୍ତମାନଙ୍କର ଶ୍ରୀଗୌରସୁନ୍ଦରଙ୍କ ପ୍ରତି ଯେଉଁ ଆବେଶ ତାହା କୀର୍ତ୍ତନକାରୀର ହୃଦୟରେ ସଞ୍ଚାରିତ ହୋଇ ତାକୁ ଶ୍ରୀଗୌରସୁନ୍ଦରଙ୍କ ପ୍ରତି ଆକୃଷ୍ଟ କରାଇବ । ଭକ୍ତମାନଙ୍କର ଗୁଣସ୍ମରଣର ଏହା ଗୋଟିଏ ମହାନ୍ ଫଳ ।

ଶ୍ରୀଗଦାଧର ପଣ୍ଡିତଙ୍କର ଶ୍ରୀଗୌରହରିଙ୍କ ପ୍ରତି ଯେଉଁ ଅଖଣ୍ଡ ପ୍ରୀତି, ଶ୍ରୀବାସ ପଣ୍ଡିତଙ୍କର ତାଙ୍କ ପ୍ରତି ଯେଉଁ ସୁଦୃଢ ନିଷ୍ଠା ଓ ଯେଉଁ ଅଭୂତପୂର୍ବ ସ୍ୱାର୍ଥତ୍ୟାଗ, ଶ୍ରୀମୁରାରିଗୁପ୍ତଙ୍କର ତାଙ୍କ

ପ୍ରତି ଯେଉଁ ଅବିଚଳିତ ଆବେଶ, ଶ୍ରୀଶିବାନନ୍ଦ ସେନ, ଶ୍ରୀରୂପ, ଶ୍ରୀସନାତନ ଓ ଶ୍ରୀରାମାନନ୍ଦ ରାୟ ପ୍ରଭୃତିଙ୍କର ତାଙ୍କ ଉଦ୍ଦେଶ୍ୟରେ ଯେଉଁ ଅନନ୍ୟସାଧାରଣ ସ୍ୱାର୍ଥତ୍ୟାଗ, ତାହା କୀର୍ତ୍ତନକାରୀର ହୃଦୟରେ ସଞ୍ଚାରିତ ହୋଇ ତାକୁ ଶ୍ରୀଗୌରସୁନ୍ଦରଙ୍କ ପ୍ରତି ପ୍ରୀତିଯୁକ୍ତ କରାଇବ । ପକ୍ଷାନ୍ତରେ ଶ୍ରୀଗୌରପ୍ରିୟଜନଙ୍କ ଗୁଣକୀର୍ତ୍ତନହେତୁ ଶ୍ରୀଗୌରହରି ଏହିପ୍ରକାର ନାମକୀର୍ତ୍ତନକାରୀ ପ୍ରତି କୃପୋନ୍ମୁଖ ହୋଇ ତାକୁ ପ୍ରେମଧନରେ ଧନୀ କରିଦେବେ । ଭକ୍ତଙ୍କ ଗୁଣ ସ୍ମରଣ ଓ କୀର୍ତ୍ତନର ଏହି ଅଦ୍ଭୁତ ପ୍ରଭାବ । ''ଆମାର ଭକ୍ତେର ପୂଜା ଆମା ହୈତେ ବଡ଼ ।'' (ଶ୍ରୀ ଚୈ:ଭା: ଆଦି ୧।୩) ଅର୍ଥାତ୍ ମୋ ପୂଜାଠାରୁ ମୋ ଭକ୍ତଙ୍କ ପୂଜା ବଡ଼ । ତେଣୁ ଭକ୍ତଙ୍କ ଗୁଣ କୀର୍ତ୍ତନ ହିଁ ଭକ୍ତବତ୍ସଳ ଭଗବାନଙ୍କର ପ୍ରୀତିପ୍ରଦ ।

ଭଗବାନ୍ କାହିଁକି ଭକ୍ତର ଅଧୀନ ? ଏହାର ଉତ୍ତରରେ କୁହାଯିବ ଯେ, ତାଙ୍କ ପ୍ରତି ଭକ୍ତର ଅଚିନ୍ତନୀୟ ସ୍ୱାର୍ଥତ୍ୟାଗ ହିଁ ତାଙ୍କୁ ଭକ୍ତପକ୍ଷପାତୀ ବା ଭକ୍ତର ଅଧୀନ କରି ଦେଇଛି । ଶ୍ରୀଭଗବାନ୍ ଭକ୍ତ ଅମ୍ବରୀଷଙ୍କ ଚରଣରେ ଅପରାଧୀ ଦୁର୍ବାସା ଋଷିଙ୍କୁ କହୁଛନ୍ତି–''ଅହଂ ଭକ୍ତପରାଧୀନୋ...... କଥଂ ତାଂ ତ୍ୟକ୍ତୁମୁତ୍ସହେ ।।'' (ଶ୍ରୀଭା: ୯।୪।୬୩-୬୫) ଅର୍ଥାତ୍ ହେ ଦ୍ୱିଜ ! ହେ ମୁନେ ! ମୁଁ ଭକ୍ତର ଅଧୀନ । ସୁତରାଂ ମୁଁ ସର୍ବତନ୍ତ୍ରସ୍ୱତନ୍ତ୍ର ହେଲେ ମଧ୍ୟ ଭକ୍ତ ନିକଟରେ ମୋର କୌଣସି ସ୍ୱାତନ୍ତ୍ର୍ୟ ନାହିଁ । ମୁକ୍ତିପର୍ଯ୍ୟନ୍ତ ବାସନାରହିତ ଭକ୍ତମାନେ ମୋ ହୃଦୟକୁ ଗ୍ରାସ କରିଛନ୍ତି । ଭକ୍ତଙ୍କ କଥା ବା କଅଣ କହିବି, ସେମାନଙ୍କ ପାଲ୍ୟଜନମାନେ ମଧ୍ୟ ମୋର ପ୍ରିୟ । ହେ ବ୍ରାହ୍ମଣବର ! ମୁଁ ଯେଉଁମାନଙ୍କର ଏକମାତ୍ର ଆଶ୍ରୟ, ସେହି ସାଧୁମାନଙ୍କ ବ୍ୟତୀତ ମୁଁ ନିଜ ସ୍ୱରୂପଗତ ଆନନ୍ଦ ଓ ନିତ୍ୟ ଷଡ଼ୈଶ୍ୱର୍ଯ୍ୟ ସମ୍ପତ୍ତିର ମଧ୍ୟ ଅଭିଳାଷ କରେ ନା । ଯେଉଁ ସାଧୁପୁରୁଷମାନେ ଗୃହ, ସ୍ତ୍ରୀ, ପୁତ୍ର, ଆତ୍ମୀୟସ୍ୱଜନ, ଧନ, ପ୍ରାଣ, ଇହପରଲୋକ ପରିତ୍ୟାଗ କରି ଏକମାତ୍ର ମୋତେ ହିଁ ଆଶ୍ରୟ କରିଛନ୍ତି, ମୁଁ କିପରି ସେମାନଙ୍କୁ ପରିତ୍ୟାଗ କରିବି ?

ସୁବଳ ! ଦେଖିଲ ତ ଭକ୍ତର ଅଭୂତପୂର୍ବ ସ୍ୱାର୍ଥତ୍ୟାଗରେ ଭଗବାନ୍ କିପରି ତା'ର ବଶୀଭୂତ ଓ ତା'ର ଅଧୀନ ହୋଇଯାଉଛନ୍ତି ! ଯେଉଁ ଭକ୍ତ ତା'ର ଅଚିନ୍ତନୀୟ ସ୍ୱାର୍ଥତ୍ୟାଗ ଦ୍ୱାରା ଭଗବାନଙ୍କୁ ତା' ପ୍ରତି ଆକୃଷ୍ଟ କରିପାରିଛି, ସେହି ଭକ୍ତର ଗୁଣକୀର୍ତ୍ତନ କଲେ କଅଣ ଭକ୍ତବତ୍ସଳ ଭଗବାନ୍ ବଶୀଭୂତ ହେବେ ନାହିଁ ?

''ଆଶ୍ଳିଷ୍ୟ ବା ପାଦରତାଂ ପିନଷ୍ଟୁ ମା-
ମଦର୍ଶନାନ୍ମର୍ମହତାଂ କରୋତୁ ବା ।
ଯଥା ତଥା ବା ବିଦଧାତୁ ଲମ୍ପଟୋ
ମତ୍ପ୍ରାଣନାଥସ୍ତୁ ସ ଏବ ନାପରଃ ।।''

ଶ୍ରୀରାଧାରାଣୀଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଯେଉଁ ଅନନ୍ୟସାଧାରଣ ସ୍ୱାର୍ଥତ୍ୟାଗ, ସେହିପରି ଯେ ତାର ସମସ୍ତ ସ୍ୱାର୍ଥକୁ ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ ଜଳାଞ୍ଜଳି ଦେଇପାରିବ, ସେ ଅନତିବିଳମ୍ବେ କୃଷ୍ଣକୃପାଲାଭର ଅଧିକାରୀ ହୋଇପାରିବ ବୋଲି ଶ୍ରୀଗୌରହରି ନିଜେ ଏହି ଶ୍ଳୋକରେ

କୃଷୀବିପ୍ରର ପତ୍ନୀର ଉଦାହରଣ ଦେଇ କହିଛନ୍ତି । କେବଳ ଶ୍ରୀକୃଷ୍ଣଙ୍କ ପ୍ରୀତି ଉଦ୍ଦେଶ୍ୟରେ ଏହି ସ୍ୱାର୍ଥତ୍ୟାଗ ହିଁ ଅଚିରେ ସାଧକକୁ ପ୍ରେମଲାଭର ଅଧିକାରୀ କରିଥାଏ । କର୍ମାର୍ପଣକାରୀ ପ୍ରାଥମିକ ଭକ୍ତିସାଧକ ହୃଦୟରେ ଭୋଗମୋକ୍ଷାଦି କୌଣସି ବାଞ୍ଛା ନ ରଖି ମହତ୍‌କୃପାରୁ ତାର ସମସ୍ତ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ କେବଳ ଶ୍ରୀକୃଷ୍ଣଙ୍କ ପ୍ରୀତି ଉଦ୍ଦେଶ୍ୟରେ କର୍ମାର୍ପଣ କରିବା ହିଁ ସର୍ବଶ୍ରେଷ୍ଠ କର୍ମାର୍ପଣ ଏବଂ ଏହିପ୍ରକାର କର୍ମାର୍ପଣକୁ ଶ୍ରୀଜୀବପାଦ 'ଭକ୍ତିମାତ୍ରକାମ କର୍ମାର୍ପଣ' ବୋଲି ଶ୍ରୀଭକ୍ତିସନ୍ଦର୍ଭ ୨୨୮ତମ ଅନୁଚ୍ଛେଦରେ ଏହିପରି ଉଲ୍ଲେଖ କରିଛନ୍ତି–

''ସଂସାରରେ ମାନବମାନେ ଭଗବାନଙ୍କ ପରିତୋଷଣ ପାଇଁ ଯେଉଁ କର୍ମର ଅନୁଷ୍ଠାନ କରନ୍ତି, ଭକ୍ତିଯୋଗସମନ୍ୱିତ ଜ୍ଞାନ ତାହାର ହିଁ ଅଧୀନ ଅର୍ଥାତ୍ ତହିଁରୁ ହିଁ ଉତ୍ପନ୍ନ ହୋଇଥାଏ ।''

ଏଥିରୁ ସ୍ପଷ୍ଟ ଜଣାଗଲା ଯେ, ଏହି ଭକ୍ତିମାତ୍ରକାମ କର୍ମାର୍ପଣ କରୁ କରୁ ସାଧକ କ୍ରମଶଃ ଶୁଦ୍ଧଭକ୍ତିସାଧନର ଯୋଗ୍ୟ ହୋଇଥାଏ । ସୁତରାଂ ଏହି ଭକ୍ତିମାତ୍ରକାମ କର୍ମାର୍ପଣ ହିଁ ଶୁଦ୍ଧଭକ୍ତିର ପୂର୍ବାଙ୍ଗ ବା ମୂଳଦୁଆ । ଅର୍ଥାତ୍ ଏହିପ୍ରକାର କର୍ମାର୍ପଣକାରୀ ଅଚିରେ ଶୁଦ୍ଧଭକ୍ତିସାଧନରେ ନିଜକୁ ପ୍ରବୃତ୍ତ କରିପାରେ । ଏଥିରୁ ସ୍ପଷ୍ଟ ଉପଲବ୍ଧ ହେଲା ଯେ, ଭୋଗ-ମୋକ୍ଷାଦି ସମସ୍ତ ସ୍ୱାର୍ଥ ପରିତ୍ୟାଗପୂର୍ବକ କେବଳ ଭଗବନ୍ନିଷ୍ଠ କର୍ମାର୍ପଣ ହିଁ ପ୍ରାଥମିକ ଭକ୍ତିସାଧକର ସର୍ବଶ୍ରେଷ୍ଠ ସାଧନ । ଏହା ଶୁଦ୍ଧଭକ୍ତିର ପୂର୍ବାଙ୍ଗ ।

ଉପରେ ମହାପ୍ରଭୁ ଯେଉଁ ସ୍ୱାର୍ଥତ୍ୟାଗ କଥା କହିଛନ୍ତି, ତାହା କର୍ମାର୍ପଣରୂପା ମିଶ୍ରା ଭକ୍ତି ନୁହେଁ, ବିଶୁଦ୍ଧା ଭକ୍ତି ।

ଏହା ଛଡ଼ା ଶ୍ରୀଶ୍ରୀବାସ ପଣ୍ଡିତ, ଶ୍ରୀରାୟରାମାନନ୍ଦ, ଶ୍ରୀଳ ପ୍ରତାପରୁଦ୍ରଦେବ, ଶ୍ରୀଳ ସାର୍ବଭୌମ ଭଟ୍ଟାଚାର୍ଯ ଇତ୍ୟାଦିଙ୍କର ଶ୍ରୀଗୌରସୁନ୍ଦରଙ୍କ ଉଦ୍ଦେଶ୍ୟରେ ଯେଉଁ ଅଚିନ୍ତନୀୟ ସ୍ୱାର୍ଥତ୍ୟାଗ ତାହା ଶ୍ରୀଚୈତନ୍ୟଭାଗବତ, ଶ୍ରୀଚୈତନ୍ୟଚରିତାମୃତରେ ବର୍ଣ୍ଣିତ ହୋଇଛି । ସେହିସବୁ ବିଷୟ ମନୋଯୋଗସହକାରେ ପାଠ କଲେ ତୁମ ହୃଦୟରେ ସେହିପରି ସ୍ୱାର୍ଥତ୍ୟାଗର ବାସନା ଅବଶ୍ୟ ଜାଗିବ ଏବଂ ତୁମେ ସେହିପରି ସ୍ୱାର୍ଥତ୍ୟାଗ କରି ତୁମପ୍ରତି ତାଙ୍କ କୃପାଦୃଷ୍ଟି ଆକୃଷ୍ଟ କରିବାକୁ ସମର୍ଥ ହୋଇପାରିବ ।

ସୁତରାଂ ତୁମେ ସେହି ଶ୍ରୀଗୌରନିଜଜନଙ୍କ କୃପାଲାଭ-ବାସନା ନେଇ ଅନୁକ୍ଷଣ କାନ୍ଦି କାନ୍ଦି ଶ୍ରୀଶ୍ରୀଗୌରନିତ୍ୟାନନ୍ଦଙ୍କୁ ଡାକ ଏବଂ ଏହା ସଙ୍ଗେ ସଙ୍ଗେ ତୁମର ଦେହରକ୍ଷାଠାରୁ ଆରମ୍ଭ କରି ଭକ୍ତିସାଧନ ପର୍ଯ୍ୟନ୍ତ ଯାବତୀୟ କାର୍ଯ୍ୟ ଶ୍ରୀଶ୍ରୀଗୌରନିତ୍ୟାନନ୍ଦଙ୍କ ପ୍ରୀତି ଉଦ୍ଦେଶ୍ୟରେ ସମ୍ପାଦନ କରି ଭଗବଦଧିଷ୍ଠାନଜ୍ଞାନରେ ପ୍ରତ୍ୟେକ ଜୀବକୁ ଯଥାଯଥ ସମ୍ମାନ ଦେବାକୁ ଚେଷ୍ଟା କର । ''ଜୀବେ ସମ୍ମାନ ଦିବେ ଜାନି କୃଷ୍ଣ-ଅଧିଷ୍ଠାନ'' (ଶ୍ରୀଚୈଃଚଃ ଅନ୍ତ୍ୟ ୨୦।୨୦)—ଏହା ଶ୍ରୀଗୌରହରିଙ୍କ ଶିକ୍ଷା । ଏହିପରି କରି ପାରିଲେ ତୁମେ ଏହି ଜନ୍ମରେ ହିଁ ଶ୍ରୀଗୌରନିଜଜନଙ୍କ ସନ୍ଧାନ ପାଇ ତାଙ୍କ କୃପାରୁ ପ୍ରେମଲାଭର ଯୋଗ୍ୟ ହୋଇପାରିବ । ଏହାଠାରୁ ସହଜ ସାଧନ ଆଉ କିଛି ନାହିଁ । ମୋଟ କଥା ''ଦିନ ପରେ ଦିନ ଚାଲି ଯାଉଛି, କେତେ ବଡ଼ ବସ୍ତୁର ସନ୍ଧାନ

ଭାଗ୍ୟଫଳରେ ପାଇଥିଲି । ଏଇ ଜନ୍ମରେ ଯଦି ଶ୍ରୀଗୌରନିଜଜନଙ୍କ କୃପାରେ ଅଭିଷିକ୍ତ ହୋଇ ନ ପାରେ ଆଉ କଅଣ ଏ ସୁଯୋଗ ମିଳିବ ? ସୁତରାଂ ଏଇ ଜନ୍ମରେ କିପରି ତାଙ୍କ କୃପା ପାଇ ଜୀବନକୁ ସାର୍ଥକ କରିବି''—ଏହି ଚିନ୍ତା ସର୍ବକ୍ଷଣ ହୃଦୟକୁ ବ୍ୟଥିତ କରୁଥିଲେ ଭକ୍ତିବିପରୀତ ପଥରେ ଯିବାକୁ କଦାପି ମନ ହେବ ନାହିଁ ଏବଂ ଯେଉଁ ପଥରେ ଚାଲିଲେ ଏହି ଜନ୍ମରେ ହିଁ ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରିବ, ସେଥିପ୍ରତି ଆଗ୍ରହ ବଢ଼ିବ । **ଏହା ହିଁ ଉପଯୁକ୍ତ ଶିଷ୍ୟ ହେବାର ପ୍ରକୃଷ୍ଟ ଯୋଗ୍ୟତା ।** ତୁମକୁ ପୂର୍ବରୁ କହିଛି ଯେ, ଗୁରୁ କରିବା ପାଇଁ ବ୍ୟଗ୍ର ନ ହୋଇ ଉପଯୁକ୍ତ ଶିଷ୍ୟ ହେବା ପାଇଁ ନିଜକୁ ଯୋଗ୍ୟ କର । ତାହାହେଲେ ଶ୍ରୀଶ୍ରୀଗୌରନିତ୍ୟାନନ୍ଦ ଉପଯୁକ୍ତ ଗୁରୁଙ୍କୁ ତୁମ ନିକଟକୁ ପଠାଇଦେବେ ଏବଂ ସେ ତୁମକୁ ଉପଯୁକ୍ତ ଶିକ୍ଷା ଦେଇ ପ୍ରେମଲାଭର ଯୋଗ୍ୟ କରାଇଦେବେ । ସୁତରାଂ ତୁମ ସାଧନ ବିଷୟରେ ଚିନ୍ତା କରିବାର କୌଣସି ଆବଶ୍ୟକତା ତୁମର ନାହିଁ ।

ମହାଜନମାନଙ୍କର ଏହିସବୁ ବଳିଷ୍ଠ ଉପଦେଶ ଥାଉ ଥାଉ ସେଥିପ୍ରତି ଆଗ୍ରହାନ୍ୱିତ ନ ହୋଇ ମୋ ଭଳି କର୍ମାଧିକାରୀ ରଜସ୍ତମୋଗୁଣାକ୍ରାନ୍ତ ଜୀବପକ୍ଷରେ ଶ୍ରୀକୃଷ୍ଣଭଜନ ଯେ ସମ୍ପୂର୍ଣ୍ଣ ଅଧିକାରବହିର୍ଭୂତ ଉଦ୍ଭଟ ଚିନ୍ତା, ଏଥିରେ ଦ୍ୱିମତ ହେବାର କିଛି ନାହିଁ ।

**ସୁବଳ—**ଶ୍ରୀଗୌରହରି ନିଜେ ଆଚରଣ କରି ଯେପରି ଶ୍ରୀକୃଷ୍ଣଭଜନ ଶିକ୍ଷା ଦେଇଗଲେ, ତାଙ୍କ ଅନୁଗତ ଗୋସ୍ୱାମୀମାନେ ତ ସେହି ଶ୍ରୀକୃଷ୍ଣଭଜନ କଥା ହିଁ ଶିକ୍ଷା ଦେଇଛନ୍ତି । ତେଣୁ ଶ୍ରୀଗୌରଭଜନ ଉପରେ ଏତେ ଗୁରୁତ୍ୱ ଦେବାର ଆବଶ୍ୟକତା କଅଣ ?

**ବାବାଜୀ ମହାରାଜ—**ସୁବଳ, ତୁମେ ଠିକ୍ ପ୍ରଶ୍ନ ପଚାରିଛ । ନିଜର ଅଧିକାର ବିଚାର ନ କରି ଅନ୍ଧଭାବରେ ସମସ୍ତେ ଏହି ବିଚାରର ବଶବର୍ତ୍ତୀ ହେଉଛନ୍ତି ।

**ସୁବଳ—**ଶ୍ରୀକୃଷ୍ଣଙ୍କ ଭଜନ ତ ସର୍ବଦା କରଣୀୟ ବୋଲି ଶ୍ରୀଳ କୃଷ୍ଣଦାସ କବିରାଜ ଗୋସ୍ୱାମୀ ତାଙ୍କ ରଚିତ ଶ୍ରୀଚୈତନ୍ୟଚରିତାମୃତରେ ଉଲ୍ଲେଖ କରିଛନ୍ତି—

''ତାତେ କୃଷ୍ଣ ଭଜେ କରେ ଗୁରୁର ସେବନ ।
ମାୟାଜାଲ ଛୁଟେ ପାୟ କୃଷ୍ଣେର ଚରଣ ॥''

(ଶ୍ରୀଚୈ:ଚ: ୨।୨୨।୧୮)

**ବାବାଜୀ ମହାରାଜ—**ସୁବଳ, ତୁମେ ତ ବେଶ ବୁଦ୍ଧିମାନ୍ । ଶ୍ରୀଳ କୃଷ୍ଣଦାସ କବିରାଜ ଗୋସ୍ୱାମୀ ଓ ଶ୍ରୀଳ ରୂପ-ସନାତନାଦି ଷଡ଼ଗୋସ୍ୱାମୀ ଯେ ଶ୍ରୀକୃଷ୍ଣଭଜନ କଥା ଶିକ୍ଷା ଦେଇଛନ୍ତି, ଏ କଥା ମଧ୍ୟ ଠିକ୍ । କିନ୍ତୁ ତହିଁରେ ଗୋଟିଏ ଗୂଢ଼ ତତ୍ତ୍ୱ ଅଛି । ତାହା ହେଉଛି ଅଧିକାରର ବିଚାର ।

**ସୁବଳ—**ଆମେ ତ ସମସ୍ତେ ମାୟାବଦ୍ଧ ଜୀବ, କୃଷ୍ଣଭଜନ କଲେ ତ ମାୟାମୁକ୍ତ ହୋଇ ପ୍ରେମ ପାଇବୁ । ଏଥିରେ ପୁଣି ଅଧିକାରର ବିଚାର ଆଉ କଅଣ ଅଛି ?

**ବାବାଜୀ ମହାରାଜ**—ଶ୍ରୀକୃଷ୍ଣଭଜନରେ ଏହି ଅଧିକାର କଥା ଶ୍ରୀଲ ରୂପଗୋସ୍ୱାମୀ ପ୍ରଭୁ ଏହିପରି ଉଲ୍ଲେଖ କରିଛନ୍ତି—

"ଉତ୍ପନ୍ନରତୟଃ ସମ୍ୟଙ୍‌ନୈର୍ବିଘ୍ନ୍ୟମନୁପାଗତାଃ ।
କୃଷ୍ଣସାକ୍ଷାତ୍‌କୃତୌ ଯୋଗ୍ୟାଃ ସାଧକାଃ ପରିକୀର୍ତ୍ତିତାଃ ।
ବିଲ୍ୱମଙ୍ଗଳତୁଲ୍ୟା ଯେ ସାଧକାସ୍ତେ ପ୍ରକୀର୍ତ୍ତିତାଃ ॥"

(ଶ୍ରୀଭ:ର:ସି ୨।୧।୨୭୬, ୨୭୯)

ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ପାଦପଦ୍ମରେ ଯାହାର ରତି ଜାତ ହୋଇଛି, ତଥାପି ଯେ ସମ୍ପୂର୍ଣ୍ଣ ଅନର୍ଥମୁକ୍ତ ହୋଇ ନାହିଁ ଏବଂ ଯେ ଶ୍ରୀକୃଷ୍ଣସାକ୍ଷାତ୍‌କାରର ଯୋଗ୍ୟ, ତାହାଙ୍କୁ ହିଁ ଭକ୍ତିସାଧକ କୁହାଯାଏ । ଯେଉଁମାନେ ବିଲ୍ୱମଙ୍ଗଳଙ୍କ ସମକକ୍ଷ ସେହିମାନେ ହିଁ ଭକ୍ତିସାଧକପଦବାଚ୍ୟ ।

ସୁବଳ, ବର୍ତ୍ତମାନ ଭକ୍ତିସାଧକର ଅଧିକାର ବା ଯୋଗ୍ୟତା କଅଣ ହେବା ଉଚିତ ତାହା ବୁଝିଲ ତ ? ତୁମେ ଯଦି ନିଜକୁ କୃଷ୍ଣଭଜନର ଯୋଗ୍ୟ ମନେ କରୁଛ, ଥରେ ଚିନ୍ତା କରି ଦେଖ ତ ତୁମର ସତ୍ୟ ସତ୍ୟ କୃଷ୍ଣଭଜନର ଯୋଗ୍ୟତା ଅଛି କି ନାହିଁ । ତୁମେ କୃଷ୍ଣନାମ ମହାମନ୍ତ୍ର ଜପ କଲାବେଳେ ତୁମର ମନ ଅନ୍ୟ ଚିନ୍ତାଗ୍ରସ୍ତ କିଂବା ନିଦ୍ରାଗ୍ରସ୍ତ ହୋଇ କୃଷ୍ଣନାମର ସ୍ମୃତି ତୁମ ହୃଦୟରୁ ସମ୍ପୂର୍ଣ୍ଣ ଦୂର କରିଦେଇ ତୁମକୁ କୃଷ୍ଣେତର ଚିନ୍ତାରେ ଅଭିନିବିଷ୍ଟ କରାଉ ନାହିଁ କି ? ସଂକୀର୍ତ୍ତନୈକପିତା ସ୍ୱୟଂ ଶ୍ରୀଗୌରହରିଙ୍କର ଶ୍ରୀକୃଷ୍ଣନାମ, ରୂପ ଓ ଲୀଳାରେ ଯେଉଁ ଅଚିନ୍ତନୀୟ ଆବେଶ, ତାହା ଶ୍ରୀଚୈତନ୍ୟଭାଗବତ ଓ ଶ୍ରୀଚୈତନ୍ୟଚରିତାମୃତରେ ଲିପିବଦ୍ଧ ହୋଇଛି । ସେହି ଗାଢ଼ ଆବେଶହେତୁ ତାଙ୍କର ଯେଉଁ ଭାବବିକାର ପ୍ରକାଶିତ ହେଉଥିଲା, ତାହା ବିସ୍ମୟକର ନୁହେଁ କି ? ସେହି ଆବେଶ ହିଁ ଭକ୍ତିସାଧକର ଏକାନ୍ତ କାମ୍ୟ । ସେହି ଆବେଶ ବ୍ୟତୀତ ଅନ୍ୟଚିନ୍ତାଗ୍ରସ୍ତ ଓ ନିଦ୍ରାଭିଭୂତ ହୋଇ ଶୁଆ ପରି ଯେଉଁ ଅନୁଭୂତିହୀନ କୃଷ୍ଣନାମ କୀର୍ତ୍ତନ, ତାହା ଭକ୍ତି ତ ନୁହେଁ, ବରଂ ଭକ୍ତିବିଘାତକ ଭକ୍ତିଜାତ ଅନର୍ଥ । ଏହି ତଥାକଥିତ ଭକ୍ତିସାଧକ ହୃଦୟରେ କେବଳ ପ୍ରତିଷ୍ଠାଲାଭର ଆଶା ସଞ୍ଚାର କରି ତାକୁ ଭକ୍ତିପଥଚ୍ୟୁତ କରିଦେବ । ସେହି କାରଣରୁ ଏହାକୁ ଭକ୍ତିଜାତ ଅନର୍ଥ ବୋଲି ଶ୍ରୀଲ ବିଶ୍ୱନାଥ ଚକ୍ରବର୍ତ୍ତିପାଦ ତାଙ୍କ ବିରଚିତ ମାଧୁର୍ଯକାଦମ୍ବିନୀରେ ଉଲ୍ଲେଖ କରିଛନ୍ତି ।

**ସୁବଳ**—ଆଜ୍ଞା, ଶ୍ରୀକୃଷ୍ଣଭଜନର ଅଧିକାର ଯେ ମୋର ଆଦୌ ନାହିଁ, ତାହା ମୁଁ ଭଲଭାବରେ ଉପଲବ୍ଧି କରୁଛି । ଶାସ୍ତ୍ରରେ ଶ୍ରୀକୃଷ୍ଣଭଜନର କଥା ସର୍ବତ୍ର କହି ପୁଣି ତହିଁରେ ଯେଉଁ ଆଙ୍କୁଶଟିଏ ଦେଇଦେଲେ, ସେ କଥା ଶୁଣି ମୋର ଭଜନର ଆଶା ସମ୍ପୂର୍ଣ୍ଣ ମଉଳିଗଲାଣି ।

**ବାବାଜୀ ମହାରାଜ**—ନା ନା, ହତାଶ ହେବାର କୌଣସି କାରଣ ନାହିଁ । ଜୀବର ଅଧିକାର ଦୁଇପ୍ରକାର—ଜାତରତି ଓ ଅଜାତରତି । ଜୀବମାତ୍ରେ ସମସ୍ତେ କର୍ମାଧିକାରୀ । ପୁଣି ରଜସ୍ତମୋଗୁଣ ପ୍ରବଳ ଥିବା ଅବସ୍ଥାରେ ସମସ୍ତେ ଅଜାତରତି । ଅଜାତରତି ବ୍ୟକ୍ତିର

ଶ୍ରୀକୃଷ୍ଣଭଜନରେ ଅଧିକାର ନାହିଁ । ସେହିହେତୁରୁ ଶ୍ରୀଳ ରୂପ ଗୋସ୍ୱାମୀ ପ୍ରଭୁ ତାଙ୍କ ରଚିତ ଶ୍ରୀନାମାଷ୍ଟକରେ ଉଲ୍ଲେଖ କରିଛନ୍ତି—

"ଅୟି ମୁକ୍ତକୁଳୈରୁପାସ୍ୟମାନଂ ପରିତସ୍ତ୍ୱାଂ ହରିନାମ ସଂଶ୍ରୟାମି ।"

ଅର୍ଥାତ୍ ହେ ମୁକ୍ତକୁଳଙ୍କ ଉପାସ୍ୟ ଶ୍ରୀହରିନାମ ! ମୁଁ ତୁମକୁ ସର୍ବତୋଭାବରେ ଆଶ୍ରୟ କରୁଛି । ଏଠାରେ ଶ୍ରୀହରିନାମ ବା ଶ୍ରୀକୃଷ୍ଣନାମକୁ ଶ୍ରୀରୂପ ଗୋସ୍ୱାମିପ୍ରଭୁ **ମୁକ୍ତକୁଳଙ୍କ ଉପାସ୍ୟ** ବୋଲି କହିଲେ । ମୁକ୍ତକୁଳ ବୋଇଲେ ଯେଉଁମାନେ ରଜସ୍ତମୋଗୁଣରୂପକ ମାୟାରୁ ମୁକ୍ତ ହୋଇଛନ୍ତି, ଅର୍ଥାତ୍ ଯେଉଁମାନେ ଜାତରତି ସେମାନଙ୍କୁ ହିଁ ବୁଝାଉଛି । ସ୍ୱୟଂ ଶ୍ରୀଚୈତନ୍ୟ ମହାପ୍ରଭୁ ନବଦ୍ୱୀପବାସୀମାନଙ୍କୁ ଏହିପରି ଉପଦେଶ ଦେଇଛନ୍ତି—

"ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ ।
ହରେ ରାମ ହରେ ରାମ ରାମ ରାମ ହରେ ହରେ ॥"

"ପ୍ରଭୁ କହେ କହିଲାଙ୍ଗ ଏଇ ମହାମନ୍ତ୍ର ।
ଇହା ଜପ ଗିୟା ସବେ କରିୟା ନିର୍ବନ୍ଧ ।
ଇହା ହୈତେ ସର୍ବସିଦ୍ଧି ହଇବେ ସବାର ।
ସର୍ବକ୍ଷଣ ବଲ ଇଥେ ବିଧି ନାହି ଆର ॥"

ଅର୍ଥାତ୍ ହେ ନବଦ୍ୱୀପବାସୀ ସଜ୍ଜନବୃନ୍ଦ ! ମୁଁ ତୁମ୍ଭମାନଙ୍କୁ ଏହି ମହାମନ୍ତ୍ର ଉପଦେଶ ଦେଲି । ତୁମ୍ଭେମାନେ ସମସ୍ତେ ଏହାକୁ ନିର୍ବନ୍ଧସହକାରେ ଅର୍ଥାତ୍ **ସଂଖ୍ୟା ରଖି ସର୍ବକ୍ଷଣ ଜପ କର । ଏହି ଜପଦ୍ୱାରା ହିଁ** ତୁମ୍ଭମାନଙ୍କର ସର୍ବସିଦ୍ଧି ହେବ । ଏହା ମହାମନ୍ତ୍ର ହୋଇଥିବାରୁ ଅନ୍ୟ ସାଧାରଣ ମନ୍ତ୍ରଜପର ବିଧାନ ପରି ଏଥିରେ ଅନ୍ୟ କୌଣସି ବିଧିପାଳନର ଆବଶ୍ୟକତା ନାହିଁ ।

ତୁମେ କହିପାର ଯେ, ସ୍ୱୟଂ ଶ୍ରୀଗୌରହରି ଯେତେବେଳେ ନବଦ୍ୱୀପବାସୀଙ୍କୁ ଏହି ମହାମନ୍ତ୍ରର ଉପଦେଶ ଦେଲେ ସେମାନେ ତ ସାଧାରଣ ମନୁଷ୍ୟ ଥିଲେ, ଜାତରତି ତ ନ ଥିଲେ? ଏହାର ଉତ୍ତରରେ କହିବି ଯେ, ଶ୍ରୀଗୌରହରି ହ୍ଲାଦିନୀର ପ୍ରକାଶ ଶ୍ରୀରାଧାରାଣୀଙ୍କ ଭାବ ନେଇ ଅବତୀର୍ଣ୍ଣ ହୋଇଥିବାରୁ ଯେ ତାଙ୍କ ଦୃଷ୍ଟିପଥରେ ପଡ଼ିଲା, ସେ ତାର କୌଣସି ସାଧନର ଅପେକ୍ଷା ନ କରି ତତ୍କ୍ଷଣାତ୍ ପ୍ରେମ ଦେଉଥିଲେ । ତାପରେ ତାକୁ ମହାମନ୍ତ୍ର କୀର୍ତ୍ତନର ଉପଦେଶ ଦେଉଥିଲେ । ସେ ପୂର୍ବବଙ୍ଗକୁ ଯାଇଥିବାବେଳେ ତପନ ମିଶ୍ରଙ୍କୁ ମଧ୍ୟ ମହାମନ୍ତ୍ର ଉପଦେଶ ଦେଲା ପରେ ଆଲିଙ୍ଗନ କରି ପ୍ରେମାବିଷ୍ଟ କରିଥିଲେ । ସୁତରାଂ ତପନ ମିଶ୍ର ମହାମନ୍ତ୍ରର ସାଧନ କରିବା ପୂର୍ବରୁ ହିଁ ପ୍ରେମ ପାଇଛନ୍ତି ଏବଂ ତାପରେ ମହାମନ୍ତ୍ର କୀର୍ତ୍ତନ କରିଛନ୍ତି ।

**ସୁବଳ**—ଆଜ୍ଞା, ଆଜିକାଲି ତ ପୃଥିବୀରେ ସର୍ବତ୍ର ସଂଖ୍ୟା ନ ରଖି ଖୋଳ କରତାଳ ସହଯୋଗରେ ଏଇ ମହାମନ୍ତ୍ର କୀର୍ତ୍ତନ କରାହେଉଛି । ଏହା କଅଣ ଭୁଲ ?

**ବାବାଜୀ ମହାରାଜ**—ଏହା ସଂପୂର୍ଣ୍ଣ ଅଶାସ୍ତ୍ରୀୟ ଓ ସ୍ୱୟଂ ସଂକୀର୍ତ୍ତନୈକପିତା ଶ୍ରୀଗୌରହରିଙ୍କ ଉପଦେଶର ସଂପୂର୍ଣ୍ଣ ବିରୋଧୀ । **''ଇହା ଜପ ଗିୟା ସବେ କରିୟା ନିର୍ବନ୍ଧ''**—ଏହା କହିବାଦ୍ୱାରା ଶ୍ରୀଗୌରହରି ନିର୍ବନ୍ଧ ଅର୍ଥାତ୍ ସଂଖ୍ୟାପୂର୍ବକ ଶ୍ରୀମହାମନ୍ତ୍ର ଜପକୁ ହିଁ ଏକମାତ୍ର ବିଧିରୂପେ ସ୍ୱୀକାର କରିଛନ୍ତି । କାରଣ ଅସଂଖ୍ୟାତ ମନ୍ତ୍ରଜପ ନିଷ୍ଫଳ ହୁଏ ବୋଲି ଶ୍ରୀହରିଭକ୍ତିବିଳାସର ''ଅସଂଖ୍ୟାତଞ୍ଚ ଯଜ୍ଜପ୍ତଂ, ତତ୍ ସର୍ବଂ ନିଷ୍ଫଳଂ ଭବେତ୍'' (୨।୧୭।୧୩୫) ଶ୍ଳୋକରେ ବିବୃତ ହୋଇଛି ।

ଶ୍ରୀଗୌରହରିଙ୍କର ଏହି ଶିକ୍ଷାରୁ ସ୍ପଷ୍ଟ ଜଣାଯାଏ ଯେ, ନିର୍ବନ୍ଧସହକାରେ **ଶ୍ରୀମହାମନ୍ତ୍ର** ଜପ କରିବାକୁ ହିଁ ସେ ଶିକ୍ଷା ଦେଇଛନ୍ତି । ଏହି ଜପ ଉଚ୍ଚ ସ୍ୱରରେ ମଧ୍ୟ କରାଯାଇପାରେ । ଶ୍ରୀଗୌରହରି ଓ ଶ୍ରୀଳ ହରିଦାସ ଠାକୁର ପ୍ରଭୃତିଙ୍କ ଆଚରଣରୁ ଏହା ଜଣାଯାଏ । 'ନିର୍ବନ୍ଧ' ଅର୍ଥ ନିୟମ । ଅଧ୍ୟବସାୟ ଅର୍ଥ ନିଷ୍ଠା, ଯାହା କି ସଂଖ୍ୟାଦ୍ୱାରା ସାଧ୍ୟ । ଏଥିରୁ ସ୍ପଷ୍ଟ ସୂଚିତ ହୁଏ ଯେ, ନାମସାଧକ ପ୍ରତ୍ୟହ ନିୟମ କରି ନିର୍ଦ୍ଦିଷ୍ଟସଂଖ୍ୟକ ମହାମନ୍ତ୍ର ଜପ କରିବ । ଶ୍ରୀଚୈତନ୍ୟଭାଗବତ ଓ ଶ୍ରୀଚୈତନ୍ୟଚରିତାମୃତ ଆଲୋଚନା କଲେ ଶ୍ରୀଗୌରହରି କିପରି ସର୍ବକ୍ଷଣ ସଂଖ୍ୟାପୂର୍ବକ ଶ୍ରୀମହାମନ୍ତ୍ର ଜପ କରୁଥିଲେ, ତାହାର ପ୍ରମାଣ ମିଳେ । ସେ କେବେହେଲେ ଅସଂଖ୍ୟାତ ମହାମନ୍ତ୍ର ଜପ ବା କୀର୍ତ୍ତନ କରିନାହାନ୍ତି । ତାଙ୍କ ଅନୁଗତ ଆଚାର୍ଯ୍ୟମାନେ ମଧ୍ୟ ସର୍ବତୋଭାବରେ ତାଙ୍କର ଅନୁସରଣ କରିଛନ୍ତି ।

**'ସର୍ବକ୍ଷଣ ବୋଲ'**—ଏହି ଉକ୍ତିର ଅର୍ଥ କରିବାକୁ ଯାଇ ଲୋକେ ଭ୍ରମରେ ପଡ଼ନ୍ତି । ଏଠାରେ 'ସର୍ବକ୍ଷଣ' କହିଲେ ନିଜର ଆହାରନିଦ୍ରାଦି ପାଇଁ ଯେଉଁ ସମୟ ଆବଶ୍ୟକ, ତାହା ବାଦ ଦେଇ ବାକି ସମୟକୁ ହିଁ ବୁଝିବାକୁ ହେବ । ଅବଶ୍ୟ ଉନ୍ନତ ଅଧିକାରରେ ନିଦ୍ରା ଏପରିକି ଆହାର ମଧ୍ୟ ତ୍ୟାଗ କରି ଶ୍ରୀହରିନାମମହାମନ୍ତ୍ର ଜପ କରିବାର ପ୍ରମାଣ ଅଛି; ଯଥା—ଶ୍ରୀଳ ହରିଦାସ ଠାକୁର, ଜଗାଇ-ମାଧାଇ ଓ ଷଡ଼ଗୋସ୍ୱାମୀ ପ୍ରଭୃତି ।

**'ବିଧି ନାହି ଆର'**—ମନ୍ତ୍ରଜପରେ ଯେଉଁସବୁ ବିଧି ପାଳନୀୟ ତାହା ଶ୍ରୀହରିଭକ୍ତିବିଳାସର ସପ୍ତଦଶ ବିଳାସରେ ବିଶଦଭାବରେ ବର୍ଣ୍ଣିତ ହୋଇଛି । ଶ୍ରୀଗୌରହରିଙ୍କ ଉପଦିଷ୍ଟ ମହାମନ୍ତ୍ର ସେହିସବୁ ବିଧିର ଊର୍ଦ୍ଧ୍ୱରେ ଅବସ୍ଥିତ । ତେଣୁ ସେ କେବଳ ସଂଖ୍ୟାରକ୍ଷଣକୁ ଏକମାତ୍ର ବିଧିରୂପେ ସ୍ୱୀକାର କରି ତାହାରି ଉପରେ ଗୁରୁତ୍ୱ ଦେଇଛନ୍ତି । ଅନ୍ୟ କୌଣସି ବିଧି ଉପରେ ଗୁରୁତ୍ୱ ଦେଇ ନାହାନ୍ତି । ଅର୍ଥାତ୍ ଶ୍ରୀମହାମନ୍ତ୍ର ଜପ ସମୟରେ ଅନ୍ୟ କୌଣସି ବିଧି ପାଳନର ଆବଶ୍ୟକତା ନାହିଁ ।

**ପ୍ରତି କଳିଯୁଗରେ ମହାମନ୍ତ୍ରଜପର ଫଳ ମୁକ୍ତି**—ମନ୍ତ୍ର ହେଲା ତାରକ ଅର୍ଥାତ୍ ଏହାର ଜପଦ୍ୱାରା ମନୁଷ୍ୟ ମୁକ୍ତି ଲାଭ କରିପାରେ । କିନ୍ତୁ ମହାମନ୍ତ୍ର ତାରକ ଓ ପାରକ ଉଭୟ । ଅର୍ଥାତ୍ ଯେ ପ୍ରେମପ୍ରାପ୍ତି ଉଦ୍ଦେଶ୍ୟ ନେଇ ଏହାକୁ ଜପ କରିବ, ସେ ପ୍ରେମଲାଭ କରିପାରିବ ଏବଂ ଯେ କେବଳ ମୁକ୍ତିପ୍ରାପ୍ତି ଉଦ୍ଦେଶ୍ୟରେ ଏହାକୁ ଜପ କରିବ, ସେ କେବଳ ମୁକ୍ତି ହିଁ ଲାଭ

କରିବ, ପ୍ରେମଲାଭ କରିବ ନାହିଁ । ମହାମନ୍ତ୍ରକୁ ମୁଖ୍ୟତଃ ତାରକ ବ୍ରହ୍ମନାମ ବୋଲି କୁହାଯାଏ । ଏହି ତାରକ ବ୍ରହ୍ମନାମ ପ୍ରତିକଳିଯୁଗର ଯୁଗଧର୍ମ ଓ ଯୁଗାବତାରମାନଙ୍କ ଦ୍ୱାରା ଏହା ପ୍ରବର୍ତ୍ତିତ ହୋଇଥାଏ । ଏହାର ଫଳ ମୁକ୍ତି ।

**ଶ୍ରୀଗୌରହରିଙ୍କ କୃପାରୁ ଏହି କଳିରେ ମହାମନ୍ତ୍ର ଜପଦ୍ୱାରା ପ୍ରେମଲାଭ ହୋଇଥାଏ**—ଯେଉଁ କଳିଯୁଗରେ ସ୍ୱୟଂ ଶ୍ରୀକୃଷ୍ଣ ଶ୍ରୀଗୌରହରିରୂପେ ଅବତୀର୍ଣ୍ଣ ହୁଅନ୍ତି, ସେହି କଳିଯୁଗରେ ଜୀବମାନଙ୍କ ହୃଦୟରେ ସେ ଭକ୍ତିବାସନା ବା ପ୍ରେମ ସଞ୍ଚାର କରିଥାଆନ୍ତି । ସେହି ପ୍ରେମଯୁକ୍ତ ହୃଦୟ ନେଇ ମହାମନ୍ତ୍ର କୀର୍ତ୍ତନ କଲେ ପରିପୁଷ୍ଟ ପ୍ରେମଲାଭ ହୋଇଥାଏ । କାରଣ "ଯାଦୃଶୀ ଭାବନା ଯସ୍ୟ ସିଦ୍ଧିର୍ଭବତି ତାଦୃଶୀ ।" ଅର୍ଥାତ୍ ଯେ ଯେପରି ବାସନା ନେଇ କାର୍ଯ୍ୟ କରେ, ସେ ତାହାର ବାସନାନୁରୂପ ଫଳ ହିଁ ଲାଭ କରେ । ତେଣୁ ଯେଉଁମାନେ ଶ୍ରୀଗୌରକୃପାରୁ ପ୍ରେମଲାଭର ବାସନା ହୃଦୟରେ ରଖି ଶ୍ରୀମହାମନ୍ତ୍ର ଜପ କରନ୍ତି, କେବଳ ସେହିମାନେ ହିଁ ପ୍ରେମ ଲାଭ କରିଥାଆନ୍ତି । ଏକଥା ସତ୍ୟ ଯେ ଶ୍ରୀଗୌରହରି ବା ତାଙ୍କ ନିଜଜନଙ୍କ କୃପା ବ୍ୟତୀତ ପ୍ରେମଲାଭର ବାସନା କାହାରି ହୃଦୟରେ ଜାଗିବା ସମ୍ଭବ ନୁହେଁ ।

**ସୁବଳ**—ଶ୍ରୀଗୌରହରି ତ ସର୍ବକ୍ଷଣ ମହାମନ୍ତ୍ର ଜପ କରିବାକୁ କହିଛନ୍ତି । ଦନ୍ତଧାବନ, ଶୌଚ ଓ ଭୋଜନାଦି ସମୟରେ ତ ଦକ୍ଷିଣ ହସ୍ତ ବନ୍ଦ ଥାଏ, ସେତେବେଳେ କିପରି ମହାମନ୍ତ୍ର ଜପ କରିବ ?

**ବାବାଜୀ ମହାରାଜ**—ସେତେବେଳେ ଶ୍ରୀମହାମନ୍ତ୍ର ଜପ ନ କରି ଅନ୍ୟ ନାମ କୀର୍ତ୍ତନ କରିବାକୁ ଶ୍ରୀଗୌରହରି ଆଦେଶ ଦେଇଛନ୍ତି ଯଥା—

"ଦଶ-ପାଁଚେ ମିଲି', ନିଜ ଦୁଆରେ ବସିୟା ।
**କୀର୍ତ୍ତନ** କରିହ ସଭେ ହାଥେ ତାଲି ଦିୟା ॥
'ହରେ ହରୟେ ନମଃ କୃଷ୍ଣ ଯାଦବାୟ ନମଃ ।
ଗୋପାଳ ଗୋବିନ୍ଦ ରାମ ଶ୍ରୀମଧୁସୂଦନ ॥'
**କୀର୍ତ୍ତନ** କହିଲୁଁ ଏଇ ତୋମା ସଭାକାରେ ।
ସ୍ତ୍ରୀ-ପୁତ୍ର-ବାପେ ମିଲି କର ଗିୟା ଘରେ ॥"

(ଶ୍ରୀଚୈ:ଭା:ମଧ ୨୧।୮୦-୮୨)

ଶ୍ରୀନବଦ୍ୱୀପବାସୀ ଭକ୍ତମାନେ ଶ୍ରୀଗୌରହରିଙ୍କଠାରୁ ଶ୍ରୀମହାମନ୍ତ୍ର ପାଇଲା ପରେ ଯେପରି ଆଚରଣ କରିଥିଲେ, ତାହା ସମସ୍ତଙ୍କର ଅନୁସରଣୀୟ ।

"ପ୍ରଭୁମୁଖେ ମନ୍ତ୍ର ପାୟା ସଭାର ଉଲ୍ଲାସ ।
ଦଣ୍ଡବତ୍ କରି ସଭେ ଗେଲା ନିଜବାସ ॥
**ନିରବଧି ସଭେଇ ଜପେନ କୃଷ୍ଣନାମ ।**
**ପ୍ରଭୁର ଚରଣ କାୟମନେ କରି ଧ୍ୟାନ ॥**

ସନ୍ଧ୍ୟା ହେଲେ ଆପନ ଦୁୟାରେ ସଭେ ମିଳି ।
**କୀର୍ତ୍ତନ କରେନ ସଭେ ଦିୟା କରତାଲି ।।''**

(ଶ୍ରୀଚୈ:ଭା:ମଧ ୨୧।୮୩-୮୫)

ଶ୍ରୀଗୌରହରିଙ୍କ ନିକଟରୁ ଶ୍ରୀମହାମନ୍ତ୍ର ପାଇବା ପରେ ନବଦ୍ବୀପବାସୀ ଭକ୍ତମାନେ ସର୍ବଦା ମନେ ମନେ ତାଙ୍କ ପାଦପଦ୍ମ ଚିନ୍ତା କରି ସଂଖ୍ୟାପୂର୍ବକ ମହାମନ୍ତ୍ର ଜପ କରୁଥିଲେ ଏବଂ ସନ୍ଧ୍ୟା ହେଲେ ସମସ୍ତେ ଏକତ୍ର ମିଶି ଦୁଆରେ କରତାଳି ଦେଇ ''ହରେ ହରୟେ ନମଃ କୃଷ୍ଣ ଯାଦବାୟ ନମଃ'' ଇତ୍ୟାଦି କୀର୍ତ୍ତନ କରୁଥିଲେ ବୋଲି ଶ୍ରୀଚୈତନ୍ୟଭାଗବତରୁ ପ୍ରମାଣ ମିଳେ । ଏଥିରୁ ସ୍ପଷ୍ଟ ସୂଚିତ ହେଲା ଯେ, ଧୀରେ ଧୀରେ ହେଉ ବା ଉଚ୍ଚ ସ୍ୱରରେ ହେଉ, ଇଷ୍ଟଦେବଙ୍କ ସ୍ମୃତି ହୃଦୟରେ ରଖି ତାଙ୍କ କୃପାଲାଭ ଉଦ୍ଦେଶ୍ୟରେ ବ୍ୟାକୁଳ କ୍ରନ୍ଦନସହକାରେ ଶ୍ରୀମହାମନ୍ତ୍ର ସଂଖ୍ୟାପୂର୍ବକ ଜପନୀୟ ବା କୀର୍ତ୍ତନୀୟ । ଆଉ ଅନ୍ୟ ସମୟରେ ଶ୍ରୀଭଗବାନଙ୍କର ଅସଂଖ୍ୟ ନାମ ମଧ୍ୟରୁ ଶ୍ରୀମହାମନ୍ତ୍ର ବ୍ୟତୀତ ଅନ୍ୟ ଯେ କୌଣସି ନାମ ବହୁଲୋକ ସମାବେଶରେ ଖୋଳ-କରତାଳ ସହଯୋଗରେ କିଂବା ହାତରେ ତାଳି ଦେଇ କୀର୍ତ୍ତନ କରାଯାଇପାରେ । କିନ୍ତୁ ଶ୍ରୀମହାମନ୍ତ୍ର ଖୋଳ-କରତାଳ ସହଯୋଗରେ ଅସଂଖ୍ୟାତଭାବେ କୀର୍ତ୍ତନ କରିବା ଅନୁଚିତ । କାରଣ ଏପରି ଆଚରଣ ସ୍ୱୟଂ ଶ୍ରୀମନ୍ମହାପ୍ରଭୁ କିଂବା ତଦନୁଗ ଆଚାର୍ଯ୍ୟବର୍ଗ କେହି କରିଯାଇ ନାହାନ୍ତି । ତେଣୁ ମହାଜନାନୁମୋଦିତ ପନ୍ଥା ହିଁ ଅନୁସରଣୀୟ । ଏ ସମ୍ବନ୍ଧରେ ବିସ୍ତୃତ ବିବରଣୀ ଜାଣିବାକୁ ଚାହିଁଲେ ଶ୍ରୀଚୈତନ୍ୟଭାଗବତ, ଶ୍ରୀଚୈତନ୍ୟଚରିତାମୃତ, ଶ୍ରୀଭାଗବତଧର୍ମ ଓ ଶ୍ରୀଭକ୍ତିବିଜ୍ଞାନ ପାଠ କରିପାର ।

## ଶ୍ରୀମହାମନ୍ତ୍ର ଗ୍ରହଣର ଅଧିକାରୀ କିଏ ?

**ସୁବଳ**—ଶ୍ରୀଗୌରହରି ଶ୍ରୀମହାମନ୍ତ୍ର ଜପ ପାଇଁ ଯେତେବେଳେ ଅନ୍ୟ କୌଣସି ବିଧି ରଖି ନାହାନ୍ତି, ତେବେ ଆମ୍ଭେମାନେ ତ ତାହା ଜପ କରିପାରିବା ?

**ବାବାଜୀ ମହାରାଜ**—ପୂର୍ବରୁ ତୁମକୁ କହିଛି ଯେ, ଏହି ମହାମନ୍ତ୍ର ତାରକ ଓ ପାରକ ଉଭୟ । ଏହା କଳିଯୁଗର ଯୁଗଧର୍ମ ଏବଂ ସବୁ କଳିଯୁଗରେ ଏହି ମହାମନ୍ତ୍ର ଜପର ହିଁ ବ୍ୟବସ୍ଥା । ସବୁ କଳିଯୁଗରେ ଏହି ମହାମନ୍ତ୍ର ଜପ ମୁକ୍ତି ଦେଇଥାଏ । କିନ୍ତୁ ଏହି କଳିର ବିଶେଷତ୍ୱ ହେଲା ଏଥିରେ ସ୍ୱୟଂ ଶ୍ରୀକୃଷ୍ଣ ଜୀବହୃଦୟରେ ତାଙ୍କ ପ୍ରତି ପ୍ରେମ ସଞ୍ଚାର କରିବା ଉଦ୍ଦେଶ୍ୟରେ ହିଁ ଶ୍ରୀଗୌରହରିରୂପେ ଅବତୀର୍ଣ୍ଣ ହୋଇଥିଲେ । ଯେହେତୁ ଜୀବହୃଦୟରେ ପ୍ରେମ (କୃଷ୍ଣେନ୍ଦ୍ରିୟ-ପ୍ରୀତିବାଞ୍ଛା) ସଞ୍ଚାର ହିଁ ତାଙ୍କର ଏକାମାତ୍ର ଉଦ୍ଦେଶ୍ୟ, ସେହେତୁ ଯେ ତାଙ୍କ ଦୃଷ୍ଟିପଥକୁ ଆସିଛି, ସେ ତାଙ୍କଠାରୁ ପ୍ରେମ ଲାଭ କରି ଅଶ୍ରୁ-କମ୍ପ-ପୁଲକାଦି ସାତ୍ତ୍ୱିକ ବିକାରରେ ଭୂଷିତ ହୋଇଛି । ତାପରେ ସେ ତାକୁ ମହାମନ୍ତ୍ର ଜପ କରିବାକୁ ଉପଦେଶ ଦେଇଛନ୍ତି । **ଅର୍ଥାତ୍ ଶ୍ରୀଗୌରହରି ଯେଉଁମାନଙ୍କୁ ଶ୍ରୀମହାମନ୍ତ୍ର ଜପର ଉପଦେଶ ଦେଇଛନ୍ତି, ସେମାନେ ସମସ୍ତେ ତାଙ୍କ କୃପାରୁ ପ୍ରଥମେ ଜାତରତି ହୋଇଛନ୍ତି । ଅତଏବ କେବଳ ଜାତରତି ଭକ୍ତମାନେ ହିଁ ମହାମନ୍ତ୍ର ଜପର ଅଧିକାରୀ ।**

## ମହାମନ୍ତ୍ରଗ୍ରହଣର ରୀତି ସମ୍ବନ୍ଧରେ ଶ୍ରୀଗୌରହରିଙ୍କ ଶିକ୍ଷା

ଅଧୁନା ଜଗତରେ ସର୍ବତ୍ର ଅଜାତରତି ରଜସ୍ତମୋଗୁଣାବିଷ୍ଟ କର୍ମାଧିକାରୀ ଜୀବଙ୍କୁ ମହାମନ୍ତ୍ର ଗ୍ରହଣର ଉପଦେଶ ଦିଆଯାଉଛି । ଏହା କିନ୍ତୁ ଶ୍ରୀଗୌରହରିଙ୍କ ଉପଦିଷ୍ଟ ପନ୍ଥା ନୁହେଁ । ଅନେକେ ମତ ପୋଷଣ କରନ୍ତି ଯେ, ମହାମନ୍ତ୍ର ଯେତେବେଳେ ସାକ୍ଷାତ୍ ଶ୍ରୀଭଗବାନଙ୍କର ନାମ, ଏଥିରେ ତ ଭଗବାନ୍ ତାଙ୍କର ସମସ୍ତ ଶକ୍ତି ନିହିତ କରିଛନ୍ତି । ତେଣୁ ଏହାର ଜପର କୌଣସି ବିଧିବିଧାନ ଆବଶ୍ୟକ ନାହିଁ । ସ୍ମୃତିଯୁକ୍ତ ହୋଇ ହେଉ କିଂବା ଅନ୍ୟମନସ୍କ ହୋଇ ହେଉ, ଯେ କୌଣସିପ୍ରକାରେ ଏହି ହରିନାମ ମହାମନ୍ତ୍ର କେବଳ ଉଚ୍ଚାରଣ କଲେ ହିଁ କାଳକ୍ରମେ ଜୀବ କୃଷ୍ଣପ୍ରେମର ଅଧିକାରୀ ହୋଇପାରିବ । ଭଗବାନଙ୍କ ପ୍ରତି ଅଶ୍ରଦ୍ଧା ପ୍ରତିପୋଷଣର ଏହା ଗୋଟିଏ ଛଦ୍ମବେଶୀ ମନୋବୃତ୍ତି । ଏ ସମ୍ପର୍କରେ ଅନେକେ ଅଜାମିଳଙ୍କ ଉଦାହରଣ ମଧ୍ୟ ଦେଇଥାନ୍ତି । କିନ୍ତୁ ଅଜାମିଳଙ୍କର ଅପରାଧ ନ ଥିବାରୁ ବୈକୁଣ୍ଠପତି ନାରାୟଣଙ୍କ ସ୍ମୃତି ନ ଥାଇ ମଧ୍ୟ କେବଳ 'ନାରାୟଣ'ନାମ ଉଚ୍ଚାରଣଦ୍ୱାରା ତାଙ୍କର ମୁକ୍ତି ହେଲା ଏବଂ ସେହି ସଙ୍ଗେ ସଙ୍ଗେ ବିଷ୍ଣୁଦୂତମାନଙ୍କ ମୁଖରୁ ନାମମାହାତ୍ମ୍ୟ ଶୁଣି ତାଙ୍କର ଭଜନସ୍ପୃହା ବଢ଼ିଲା ଏବଂ ସେ ଭଜନ କରି ବୈକୁଣ୍ଠକୁ ଗଲେ । ଜଗଦ୍‌ବାସୀ ବିମୁଖ ଜୀବମାତ୍ରେ ସମସ୍ତେ ଯେ ଅପରାଧଦୁଷ୍ଟ, ଏଥିରେ ଦ୍ୱିମତ ହେବାର କିଛି ନାହିଁ । ତେଣୁ ଅଜାମିଳଙ୍କର ଉଦାହରଣ ସେମାନଙ୍କ ପକ୍ଷରେ ପ୍ରଯୁଜ୍ୟ ନୁହେଁ ।

ଏ ସମ୍ବନ୍ଧରେ ସଂକୀର୍ତ୍ତନୈକପିତା ସ୍ୱୟଂ ମହାପ୍ରଭୁଙ୍କ ଆଚରଣ ଓ ଶିକ୍ଷା କଅଣ ପ୍ରଥମେ ତାହା ବିଚାର କରାଯାଉ । ସେ ତାଙ୍କ ଉପଦିଷ୍ଟ ଶିକ୍ଷାଷ୍ଟକରେ ଯେଉଁସବୁ ଉପଦେଶ ଦେଇଛନ୍ତି, ତହିଁରେ ଶ୍ରୀହରିନାମ କୀର୍ତ୍ତନ ସମୟରେ ସର୍ବକ୍ଷଣ ହୃଦୟରେ ଅଖଣ୍ଡ ସ୍ମୃତି ରଖିବାର ବିଧାନ ଦେଖାଯାଏ । ସ୍ମୃତି ନ ଥିଲେ ହୃଦୟରେ କୌଣସି ଭାବର ଉଦୟ ସମ୍ଭବ ନୁହେଁ । ସେ ପ୍ରଥମେ କହିଲେ "ଆନନ୍ଦାମ୍ବୁଧିବର୍ଧନଂ ପ୍ରତିପଦଂ ପୂର୍ଣ୍ଣାମୃତାସ୍ୱାଦନଂ"– ଶ୍ରୀହରିନାମ କୀର୍ତ୍ତନକାରୀର ହୃଦୟର ଭାବ କିପରି ହେବା ଆବଶ୍ୟକ, ସେ ବିଷୟରେ ନିଦର୍ଶନ ଏଥିରେ ଅଛି । ଶ୍ରୀହରିନାମ କୀର୍ତ୍ତନ ସମୟରେ ସ୍ମୃତି ନ ଥାଇ ଅମନଯୋଗିତା ଥିଲେ ହୃଦୟରେ ଆନନ୍ଦାମ୍ବୁଧିବର୍ଧନ ଓ ପ୍ରତିପଦରେ ପୂର୍ଣ୍ଣାମୃତାସ୍ୱାଦନ ହେବା କିପରି ସମ୍ଭବ ହେବ ? "ଏତାଦୃଶୀ ତବ କୃପା ଭଗବନ୍ମମାପି ଦୁର୍ଦ୍ଦୈବମୀଦୃଶ ମିହାଜନି ନାନୁରାଗଃ"– ନାମରେ ଭଗବାନ୍ କୃପା କରି ତାଙ୍କର ସମସ୍ତ ଶକ୍ତି ଦେଇଛନ୍ତି । କିନ୍ତୁ ମୋର ଏପରି ଦୁର୍ଦ୍ଦୈବ ଯେ, ଏପରି ନାମରେ ମୋର ଅନୁରାଗ ହେଲା ନାହିଁ । ନାମକୀର୍ତ୍ତନ ସମୟରେ ମନରେ ଏହିପରି ଭାବନା ରଖିବାଦ୍ୱାରା ନାମକୀର୍ତ୍ତନରେ ମନଃସଂଯୋଗର ପ୍ରମାଣ ମିଳୁ ନାହିଁ କି ?

"ତୃଣାଦପି ସୁନୀଚେନ ତରୋରିବ ସହିଷ୍ଣୁନା" ଶ୍ଳୋକରେ ମହାପ୍ରଭୁ ଏହିପରି କହିଛନ୍ତି–

"ଉତ୍ତମ ହଞା ଆପନାକେ ମାନେ 'ତୃଣାଧମ' ।<br>ଦୁଇପ୍ରକାରେ ସହିଷ୍ଣୁତା କରେ ବୃକ୍ଷସମ ॥"

ବୃକ୍ଷ ଯେନ କାଟିଲେହ କିଛୁ ନା ବୋଲୟ ।
ଶୁଖାଇୟା ମୈଲେ କାରେ ପାନୀ ନା ମାଗୟ ॥
ଯେଇ ଯେ ମାଗୟେ, ତାରେ ଦେୟ ଆପନ ଧନ ।
ଘର୍ମବୃଷ୍ଟି ସହେ ଆନେର କରୟେ ରକ୍ଷଣ ॥
ଉତ୍ତମ ହୈୟା ବୈଷ୍ଣବ ହବେ ନିରଭିମାନ ।
ଜୀବେ ସମ୍ମାନ ଦିବେ ଜାନି କୃଷ୍ଣ-ଅଧିଷ୍ଠାନ ॥
ଏଇମତ ହୟା ଯେଇ କୃଷ୍ଣନାମ ଲୟ ।
କୃଷ୍ଣେର ଚରଣେ ତାର ପ୍ରେମ ଉପଜୟ ॥''

(ଶ୍ରୀ ଚୈ:ଚ: ୩।୧୭-୨୧)

ଅର୍ଥାତ୍ ନାମକୀର୍ତ୍ତନକାରୀ ସର୍ବୋତ୍ତମ ହୋଇ ମଧ୍ୟ ନିଜକୁ ତୃଣଠାରୁ ହୀନ ଜ୍ଞାନ କରିବ । ଗଛକୁ ଯେପରି କେହି କାଟିଦେଲେ ମଧ୍ୟ ସେ କୌଣସି ଆପତ୍ତି କରେ ନାହିଁ, ଶୁଖି କରି ମରିଗଲେ ମଧ୍ୟ କାହାରିକୁ ପାଣି ଟୋପାଏ ମାଗେ ନାହିଁ, ତାର ପତ୍ର, ଫଳ, ଫୁଲ, ଡାଳ ଇତ୍ୟାଦି ଯେ ଯାହା ଚାହେଁ, ତାକୁ ସେ ଅକାତରରେ ତାହା ଦିଏ । ନିଜେ ଖରାବର୍ଷା ସହି ଅନ୍ୟକୁ ଛାୟା ଦେଇ ଖରା ଓ ବର୍ଷାରୁ ରକ୍ଷା କରେ । ବୈଷ୍ଣବ ସେହିପରି ନିରଭିମାନ ହେବ । ଭଗବାନ୍ ଅନ୍ତର୍ଯାମୀରୂପେ ସବୁ ଜୀବ ହୃଦୟରେ ଅଛନ୍ତି । ଜୀବର ଦେହ ଭଗବାନଙ୍କ ମନ୍ଦିର ତୁଲ୍ୟ । ଏହି ବିଚାରରେ ପ୍ରତ୍ୟେକ ପ୍ରାଣୀକୁ ସମ୍ମାନ କରିବ । ଏହିପରି ବିଚାର ହୃଦୟରେ ପୋଷଣ କରି ହରିନାମ କଲେ ଜୀବ ରଜସ୍ତମୋଗୁଣମୁକ୍ତ ହୋଇ ମହତ୍‌କୃପାର ଯୋଗ୍ୟ ହୋଇପାରିବ ଏବଂ ଏହି ମହତଙ୍କ ଆନୁଗତ୍ୟରେ ଭଜନ କଲେ ଅଚିରେ ପ୍ରେମଲାଭ ହୋଇପାରିବ ।

''ଏଇମତ ହୈୟା ଯେଇ କୃଷ୍ଣନାମ ଲୟ । କୃଷ୍ଣେର ଚରଣେ ତା'ର ପ୍ରେମ ଉପଜୟ ॥'' ଏହି ଉକ୍ତିଦ୍ୱାରା ହରିନାମ କୀର୍ତ୍ତନ ପୂର୍ବରୁ ହୃଦୟରେ ଏହିପରି ଭାବ ପୋଷଣ କରିବା କଥା ସ୍ୱୟଂ ସଂକୀର୍ତ୍ତନୈକପିତା ମହାପ୍ରଭୁ ଉପଦେଶ ଦେଇଛନ୍ତି ।

''ନ ଧନଂ ନ ଜନଂ ନ ସୁନ୍ଦରୀଂ କବିତାଂ ବା ଜଗଦୀଶ କାମୟେ । ମମ ଜନ୍ମନି ଜନ୍ମନୀଶ୍ୱରେ ଭବତାଭକ୍ତିରହୈତୁକୀ ତ୍ୱୟି ॥'' ଏଠାରେ ହରିନାମକୀର୍ତ୍ତନକାରୀର ମନରେ କି ପ୍ରକାର ବାସନା ରହିବା ଉଚିତ, ତାହା ଶିକ୍ଷା ଦିଆଯାଇଛି । ପୁଣି ''ଅୟି, ନନ୍ଦତନୁଜ..... ଧୂଳିସଦୃଶଂ ବିଚିନ୍ତୟ ॥'' ଶ୍ଲୋକରେ ଇଷ୍ଟଦେବଙ୍କ ଶ୍ରୀପାଦପଦ୍ମରେ ନିଜର ଦୁର୍ଦ୍ଦୈବ ଜ୍ଞାପନ କରି ତାଙ୍କ ଶ୍ରୀପାଦପଦ୍ମର ଧୂଳିରୂପେ ଚିନ୍ତା କରିବାକୁ ତାଙ୍କୁ ପ୍ରାର୍ଥନା କରାଯାଉଛି । ''ନୟନଂ ଗଳଦଶ୍ରୁଧାରୟା....'' ଶ୍ଲୋକରେ କେବେ ବ୍ୟାକୁଳ ହୃଦୟରେ କାନ୍ଦି କାନ୍ଦି ଇଷ୍ଟଦେବଙ୍କ ନାମ ନେବି–ତାଙ୍କ ଶ୍ରୀପାଦପଦ୍ମରେ ଏହି ପ୍ରାର୍ଥନା କରାଯାଉଛି । ''ଯୁଗାୟିତଂ..... ଗୋବିନ୍ଦବିରହେଣ ମେ ॥'' ଶ୍ଲୋକରେ ଇଷ୍ଟଦେବଙ୍କ ଅଦର୍ଶନହେତୁ ହୃଦୟର ବ୍ୟାକୁଳତା କଥା ବ୍ୟକ୍ତ କରାଯାଇଛି । ଏହାର ଅନୁବାଦ ଶ୍ରୀଚୈତନ୍ୟଚରିତାମୃତରେ ଏହିପରି କରାଯାଇଛି–

''ଉଦ୍‌ବେଗେ ଦିବସ ନା ଯାୟ କ୍ଷଣ ହୈଲ ଯୁଗସମ ।
ବର୍ଷାର ମେଘପ୍ରାୟ ଅଶ୍ରୁ ବରିଷେ ନୟନ ॥
ଗୋବିନ୍ଦ ବିରହେ ଶୂନ୍ୟ ହୈଲ ତ୍ରିଭୁବନ ।
ତୁଷାନଳେ ପୋଡ଼େ ଯେନ ନା ଯାୟ ଜୀବନ ॥''

ଅର୍ଥାତ୍ କୃଷ୍ଣଙ୍କ ଅଦର୍ଶନହେତୁ ଉଦ୍‌ବେଗରେ ଦିନ କଟୁ ନାହିଁ । ଗୋଟିଏ ମୁହୂର୍ତ୍ତ ଗୋଟିଏ ଯୁଗ ପରି ବୋଧ ହେଉଛି । ବର୍ଷାଜଳ ପରି ଚକ୍ଷୁରୁ ଅଶ୍ରୁ ଝରୁଛି । ଗୋବିନ୍ଦଙ୍କ ବିରହରେ ତ୍ରିଭୁବନ ଶୂନ୍ୟ ବୋଧ ହେଉଛି, ହୃଦୟ ତଷୁନିଆଁରେ ପୋଡ଼ିଯାଉଥିଲା ପରି ବୋଧ ହେଉଥିଲେ ମଧ ପ୍ରାଣ ଯାଉ ନାହିଁ ।

ହରିନାମକୀର୍ତ୍ତନକାରୀର ହୃଦୟରେ ଏହିପରି ବ୍ୟାକୁଳତା ରହିବା କଥା ହିଁ ଶ୍ରୀଗୌରହରି ଶିକ୍ଷା ଦେଇଛନ୍ତି । **ଅମନଯୋଗୀ ହୋଇ ହରିନାମ କଲେ ଏହିପରି ଭାବ ହୃଦୟରେ ଜାଗିବା ଅସମ୍ଭବ । ତେଣୁ ଅମନଯୋଗୀ ହୋଇ ହରିନାମ କରିବା ସଂକୀର୍ତ୍ତନୈକପିତା ଶ୍ରୀଗୌରହରିଙ୍କ ଶିକ୍ଷା ନୁହେଁ ।** ଏହିପରି ଶିକ୍ଷାଷ୍ଟକର ପ୍ରତିଶ୍ଳୋକରେ ଶ୍ରୀହରିନାମ କୀର୍ତ୍ତନ ବା ଜପ ସମୟରେ ତହିଁରେ ମନଃସଂଯୋଗର ପ୍ରମାଣ ମିଳୁଛି ।

ସେ ଶଚୀମାଙ୍କୁ ଉପଦେଶ ଦେଲାବେଳେ କହିଛନ୍ତି–

''ମନେ ଚିନ୍ତ' କୃଷ୍ଣେ, ମାତା ! ମୁଖେ ବଲ 'ହରି' ।'' (ଶ୍ରୀଚୈ:ଭା: ୨।୧।୨୩୯) ଅର୍ଥାତ୍ ପ୍ରଥମେ ମନେ ମନେ କୃଷ୍ଣଙ୍କ ଚିନ୍ତା କରି ପରେ ତାଙ୍କ ନାମ ଉଚ୍ଚାରଣ କର ।

ଶ୍ରୀଳ ରୂପ ପ୍ରଭୁ ଶ୍ରୀଭକ୍ତିରସାମୃତସିନ୍ଧୁରେ ବୈଧୀ ଓ ରାଗାନୁଗା ସାଧନଭକ୍ତି ବିଷୟରେ ବର୍ଣ୍ଣନା କରିବାକୁ ଯାଇ ତାହାର ଉପକ୍ରମରେ ପଦ୍ମପୁରାଣର ଏହି ଶ୍ଳୋକଟି ଉଲ୍ଲେଖ କରିଛନ୍ତି–

''ସ୍ମର୍ତ୍ତବ୍ୟଃ ସତତଂ ବିଷ୍ଣୁର୍ବିସ୍ମର୍ତ୍ତବ୍ୟୋ ନ ଜାତୁଚିତ୍ ।
ସର୍ବେ ବିଧିନିଷେଧାଃ ସ୍ୟୁରେତୟୋରେବ କିଙ୍କରାଃ ॥''

ଅର୍ଥାତ୍ ଶ୍ରୀବିଷ୍ଣୁଙ୍କୁ ସର୍ବଦା ସ୍ମରଣ କରିବ । କେବେହେଲେ ତାଙ୍କୁ ବିସ୍ମୃତ ହେବ ନାହିଁ । ଶାସ୍ତ୍ରପ୍ରଦତ୍ତ ସମସ୍ତ ବିଧିନିଷେଧ ଏହି ଶ୍ରୀବିଷ୍ଣୁସ୍ମରଣର ହିଁ କିଙ୍କର । ଏହି ଶାସ୍ତ୍ରବାକ୍ୟରୁ ଶ୍ରୀବିଷ୍ଣୁଙ୍କ ସ୍ମରଣ ହିଁ ଯେ ସବୁ ସାଧନର ମୂଳ ଲକ୍ଷ୍ୟ ଏହା ପ୍ରମାଣିତ ହେଲା । ତେଣୁ ଶ୍ରୀହରିନାମ ଜପ ସମୟରେ ଶ୍ରୀହରିଙ୍କ ସ୍ମରଣ ରହିବା ଅପରିହାର୍ଯ୍ୟ ।

ତାପରେ ଆଉ ଗୋଟିଏ କଥା ଏଠାରେ ବିଚାର୍ଯ୍ୟ । ତାହା ହେଲା ସାଧନର ଉଦ୍ଦେଶ୍ୟ । ସେ ସମ୍ବନ୍ଧରେ ମଧ ମହାପ୍ରଭୁ ତାଙ୍କ ଶିକ୍ଷାଷ୍ଟକର ପଞ୍ଚମ ଶ୍ଳୋକରେ ଏହିପରି ଉଲ୍ଲେଖ କରିଛନ୍ତି–''ଅୟି ନନ୍ଦତନୁଜ କିଙ୍କରଂ ପତିତଂ ମାଂ ବିଷମେ ଭବାମ୍ବୁଧୌ । କୃପୟା ତବ ପାଦପଙ୍କଜସ୍ଥିତ-ଧୂଳୀସଦୃଶଂ ବିଚିନ୍ତୟ ।'' ଅର୍ଥାତ୍ ହେ ନନ୍ଦନନ୍ଦନ! ମୁଁ ତୁମର ନିତ୍ୟ କିଙ୍କର । ତୁମକୁ ଭୁଲି ଏ ବିଷମ ଭବସମୁଦ୍ରରେ ପଡ଼ିଛି । ଏ ଅଧମକୁ ତୁମ ପାଦପଦ୍ମର ଧୂଳିସଦୃଶ ଚିନ୍ତା କର ।

ଏଠାରେ ନାମକୀର୍ତ୍ତନ ସମୟରେ ହୃଦୟର ଏହି ଭାବ ଶ୍ରୀକୃଷ୍ଣଙ୍କ ଶ୍ରୀଚରଣରେ ନିବେଦନ କରିବା କଥା ମହାପ୍ରଭୁ ଶିକ୍ଷା ଦେଇଛନ୍ତି ।

ଏହିପରି ଆଠଟିଯାକ ଶ୍ଲୋକରେ ଅଭିନିବେଶସହକାରେ ଆର୍ତ୍ତିଯୁକ୍ତ ପ୍ରାର୍ଥନାପୂର୍ବକ କିପରି ଶ୍ରୀକୃଷ୍ଣନାମ କୀର୍ତ୍ତନ କରାଯିବ, ଏହା ଯେ ସଂକୀର୍ତ୍ତନୈକପିତା ଶ୍ରୀମନ୍ମହାପ୍ରଭୁଙ୍କ ଶିକ୍ଷା, ତାହା ସ୍ପଷ୍ଟ ବୁଝାଯାଏ । "ନୟନଂ ଗଳଦଶ୍ରୁଧାରୟା ବଦନଂ ଗଦ୍‌ଗଦରୁଦ୍ଧୟା ଗିରା । ପୁଲକୈର୍ନିଚିତଂ ବପୁଃ କଦା ତବ ନାମଗ୍ରହଣେ ଭବିଷ୍ୟତି ।" ହେ ନନ୍ଦନନ୍ଦନ ! ତୁମକୁ ଡାକିଲାବେଳେ କେବେ ମୋର ଚକ୍ଷୁଦ୍ୱୟ ଅଶ୍ରୁବିଗଳିତ ହେବ, ମୁଖ ଗଦ୍‌ଗଦବାକ୍ୟରେ ରୁଦ୍ଧ ହେବ ଓ ସମସ୍ତ ଦେହ ପୁଲକରେ ପରିପୂର୍ଣ୍ଣ ହେବ ? ନାମକୀର୍ତ୍ତନକାରୀର ହୃଦୟରେ ଭାବ ନ ଥିଲେ ତା'ର ଏ ଅବସ୍ଥା କଦାପି ହୋଇପାରିବ ନାହିଁ ।

"ଯୁଗାୟିତଂ ନିମେଷେଣ ଚକ୍ଷୁଷା ପ୍ରାବୃଷାୟିତଂ । ଶୂନ୍ୟାୟିତଂ ଜଗତ୍‌ସର୍ବଂ ଗୋବିନ୍ଦ-ବିରହେଣ ମେ ।" ଅର୍ଥାତ୍ ଗୋବିନ୍ଦଙ୍କ ବିରହରେ ଗୋଟିଏ ନିମିଷ ମୋତେ ଗୋଟିଏ ଯୁଗ ପରି ବୋଧ ହେଉଛି । ତାଙ୍କ ବିରହରେ ସମସ୍ତ ଜଗତ୍ ଶୂନ୍ୟ ବୋଧ ହେଉଛି ।

ଏହି ଶିକ୍ଷାଷ୍ଟକରେ ମହାପ୍ରଭୁ ତାଙ୍କ ଉପଦିଷ୍ଟ ନାମ କୀର୍ତ୍ତନର ପ୍ରଣାଳି ସମ୍ବନ୍ଧରେ ସ୍ପଷ୍ଟରୂପେ ଶିକ୍ଷା ଦେଇଛନ୍ତି । ତାଙ୍କର ଏହି ଶିକ୍ଷାରୁ ଜଣାଯାଏ ଯେ, ନାମକୀର୍ତ୍ତନକାରୀ ସର୍ବଦା ତୀବ୍ର ଆର୍ତ୍ତିଯୁକ୍ତ ହୋଇ ଉଚ୍ଚସ୍ୱରରେ ସ୍ପଷ୍ଟାକ୍ଷରରେ ନାମ ଉଚ୍ଚାରଣ କରିବା ଉଚିତ ।

ଶ୍ରୀଳ ପୁରୀଦାସ ଗୋସ୍ୱାମୀ ମଧ୍ୟ ଷଡ଼ଗୋସ୍ୱାମୀ ଓ ଶ୍ରୀଳ ନରୋତ୍ତମ ଠାକୁରଙ୍କ ଅନୁସରଣରେ ସର୍ବଦା କାନ୍ଦି କାନ୍ଦି ଉଚ୍ଚ ସ୍ୱରରେ ଓ ସ୍ପଷ୍ଟାକ୍ଷରରେ ଏହି ନାମ କୀର୍ତ୍ତନ କରିବାକୁ ଶିକ୍ଷା ଦେଇଯାଇଛନ୍ତି ।

ଏଥିରୁ ସ୍ପଷ୍ଟ ସୂଚିତ ହୁଏ ଯେ, ନାମ କୀର୍ତ୍ତନକାରୀ ସର୍ବଦା ନିଜର ଅଯୋଗ୍ୟତା ତୀବ୍ରଭାବରେ ଉପଲବ୍ଧି କରି ତୀବ୍ର ଆର୍ତ୍ତିଯୁକ୍ତ ହୋଇ ଶ୍ରୀନାମକୀର୍ତ୍ତନ କରିବା ବିଧେୟ । ଏପରି ଅବସ୍ଥାରେ ନାମକୀର୍ତ୍ତନରେ ଅମନଯୋଗିତାର ପ୍ରଶ୍ନ ହିଁ ଉଠି ନ ପାରେ ।

## 'ଯୋଗ'ଶବ୍ଦର ତାତ୍ପର୍ଯ୍ୟ କଅଣ ?

ଶ୍ରୀକୃଷ୍ଣ ଶ୍ରୀଉଦ୍ଧବଙ୍କୁ ଉପଦେଶ ଦେଲାବେଳେ କେବଳ 'କର୍ମ', କେବଳ 'ଜ୍ଞାନ' ଓ କେବଳ 'ଭକ୍ତି' କଥା ନ କହି ତା ସଙ୍ଗରେ ଯୋଗ ଶବ୍ଦ ଯୋଡ଼ି କର୍ମଯୋଗ, ଜ୍ଞାନଯୋଗ ଓ ଭକ୍ତିଯୋଗର କଥା କହିଲେ କାହିଁକି ? ଏହାର ଉତ୍ତର ସେହି ଶ୍ରୀମଦ୍ଭାଗବତରେ (୧୧।୧୩।୧୪)ରେ ଏହିପରି ଦିଆ ହୋଇଛି—

ଏତାବାନ୍ ଯୋଗ ଆଦିଷ୍ଟୋ ମଚ୍ଛିଷ୍ୟୈଃ ସନକାଦିଭିଃ ।
ସର୍ବତୋ ମନ ଆକୃଷ୍ୟ ମୟ୍ୟଦ୍ଧାବେଶ୍ୟତେ ଯଥା ॥

ଅର୍ଥାତ୍ ସମସ୍ତ ବିଷୟରୁ ମନକୁ ଆକର୍ଷଣପୂର୍ବକ ଅଦ୍ୱୟ ପରତତ୍ତ୍ୱ ବସ୍ତୁ **'ମୋଠାରେ'** ଯଥାଯଥଭାବରେ ସାକ୍ଷାଦ୍ରୂପେ ଯେଉଁ ଆବେଶ(ସ୍ମୃତି), ତାହାକୁ ହିଁ ସନକାଦି ମୋର

ଶିଷ୍ୟମାନେ 'ଯୋଗ' ବୋଲି କହିଛନ୍ତି । ବସ୍ତୁତଃ ଅନ୍ତରେ ବାହାରେ ସର୍ବତ୍ର ଓ ସର୍ବଦା ପରତତ୍ତ୍ୱ ଶ୍ରୀଭଗବାନଙ୍କ ସ୍ମୃତି ହିଁ 'ଯୋଗ' ।

ସୁତରାଂ କେବଳ ଭକ୍ତି ନୁହେଁ ଭକ୍ତିସାଧକ ତାର ଜୀବନଧାରଣ ପାଇଁ ସ୍ନାନ, ଭୋଜନ ଓ ଶୟନାଦି ଯାହା କିଛି କରେ ତାହା ମଧ୍ୟ ଭଗବାନଙ୍କ ପ୍ରୀତି ଉଦ୍ଦେଶ୍ୟରେ ଅନୁଷ୍ଠିତ ହେବା ଉଚିତ । ଅର୍ଥାତ୍ ଯେଉଁଭଳିଭାବରେ କଲେ ତାହା ଭକ୍ତିର ପ୍ରତିବନ୍ଧକ ନ ହୋଇ ସହାୟକ ହେବ, ସେହିପରିଭାବରେ ହିଁ ସେସବୁ କରଣୀୟ ।

ଶ୍ରୀଲ ସନାତନ ଗୋସ୍ୱାମୀ ପ୍ରଭୁ ଭକ୍ତିଯୋଗ ବିଷୟରେ ବୃହଦ୍ଭାଗବତାମୃତ (୨।୪।୫)ରେ ଉଲ୍ଲେଖ କରିଛନ୍ତି–''ଭକ୍ତିରେବ ଯୋଗଃ ବୈକୁଣ୍ଠଲୋକପ୍ରାପ୍ତ୍ୟୁପାୟଃ, ଭଗବଚ୍ଚରଣାରବିନ୍ଦ-ସଂଯୋଗରୂପୋ ବା ।'' ଅର୍ଥାତ୍ ଭକ୍ତି ହିଁ ଯୋଗ ଅର୍ଥାତ୍ ବୈକୁଣ୍ଠଲୋକପ୍ରାପ୍ତିର ଉପାୟ ଅଥବା ଭଗବତ୍‌ପାଦପଦ୍ମରେ ସଂଯୋଗକାରୀ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଲା ଯେ, ମନକୁ ଭଗବତ୍‌ପାଦପଦ୍ମରେ ଯୋଗ କରିବାରୂପକ ଯେଉଁ ସାଧନ ତାହା ହିଁ ଭକ୍ତି ଏବଂ ତାହା ହିଁ ବୈକୁଣ୍ଠଲୋକପ୍ରାପ୍ତିର ଉପାୟ ।

ଯତ୍ର ଯତ୍ର ମନୋ ଦେହୀ ଧାରୟେତ୍ ସକଳଂ ଧିୟା ।
ସ୍ନେହାଦ୍ ଦ୍ୱେଷାଦ୍ ଭୟାଦ୍ ବାପି ଯାତି ତତ୍ତତ୍‌ସରୂପତାମ୍ ॥
କୀଟଃ ପେଶସ୍କୃତଂ ଧ୍ୟାୟନ୍ କୁଡ୍ୟାଂ ତେନ ପ୍ରବେଶିତଃ ।
ଯାତି ତତ୍‌ସାତ୍ମତାଂ ରାଜନ୍ ପୂର୍ବରୂପମସନ୍ତ୍ୟଜନ୍ ॥

(ଶ୍ରୀଭା: ୧୧।୯।୨୨-୨୩)

ଅର୍ଥାତ୍ ଜୀବ ସ୍ନେହ, ଦ୍ୱେଷ ବା ଭୟସହକାରେ ଯେଉଁ ଯେଉଁ ବସ୍ତୁ ପ୍ରତି ଏକାନ୍ତଭାବରେ ମନୋନିବେଶ କରେ, ସେହି ସେହି ବସ୍ତୁର ହିଁ ସ୍ୱରୂପ ଲାଭ କରିଥାଏ । ହେ ରାଜନ୍ ! ପେଶସ୍କାରୀ ଭ୍ରମର କୌଣସି ଗୋଟିଏ ଦୁର୍ବଳ କୀଟକୁ ତା ମାଟିଘରକୁ ଆଣି ତାକୁ ସର୍ବଦା ଆବଦ୍ଧ କରି ରଖେ । ସେହି କୀଟ ଭୟରେ ସର୍ବଦା ତାକୁ ଆବଦ୍ଧ କରି ରଖିଥିବା ସେହି ବଳବାନ୍ ଭ୍ରମର କଥା ଚିନ୍ତା କରୁ କରୁ ନିଜର ପୂର୍ବ ଦେହ ପରିତ୍ୟାଗ ନ କରି ମଧ୍ୟ ବଞ୍ଚି ଥାଉ ଥାଉ ଭ୍ରମର ହୋଇଯାଏ ।

ଅନୁକ୍ଷଣ ସ୍ମରଣର ଯେ କି ଅଦ୍ଭୁତ ପ୍ରଭାବ, ତାହା ଏଠାରେ କୁହାଯାଇଛି ।

ଶ୍ରୀକୃଷ୍ଣ ଶ୍ରୀଗୀତାରେ ଶ୍ରୀଅର୍ଜୁନଙ୍କୁ ସର୍ବଦା ତାଙ୍କୁ ସ୍ମରଣ କରିବା ଓ ସର୍ବଦା ତାଙ୍କ ଭାବରେ ଭାବିତ (ତଦ୍ଭାବଭାବିତ) ରହିବା ପାଇଁ ଯେଉଁ ଶିକ୍ଷା ଦେଇଛନ୍ତି ତାହାର ଉଦ୍ଦେଶ୍ୟ ହେଲା ଏହି ଯେ, ସର୍ବଦା ତାଙ୍କ ଭାବରେ ଭାବିତ ହୋଇ ରହିଲେ ଅନ୍ତଃକାଳରେ ଅର୍ଥାତ୍ ମରଣ ସମୟରେ ତାଙ୍କ ସ୍ମୃତି ନେଇ ମରି ପାରିବା । ତାହାହେଲେ ଆଉ ଏ କୃତଘ୍ନତାପୂର୍ଣ୍ଣ ଘୃଣ୍ୟ ସଂସାରକୁ ଆସିବାକୁ ପଡ଼ିବ ନାହିଁ । ପୁଣି ଏହି ଭାବ ଯଦି ତାଙ୍କ ନିତ୍ୟସେବାଲାଭ ଆଶାରେ ହୋଇଥାଏ, ତାହାହେଲେ ମୃତ୍ୟୁପରେ ତାହା ଅବଶ୍ୟ ମିଳିବ । ଯେ କୌଣସି ଭକ୍ତ୍ୟଙ୍ଗ ସାଧନ

କଲାବେଳେ ଶ୍ରୀକୃଷ୍ଣଙ୍କଠାରେ କିପରି ଦୃଢ଼ମତି ଲାଭ ହେବ, ସେହି ବିଷୟରେ ବ୍ୟାକୁଳ ପ୍ରାର୍ଥନା ଥିଲେ, ମୃତ୍ୟୁସମୟରେ ପରମକରୁଣାମୟ ଭଗବାନ୍ ସେ ବାସନା ଅବଶ୍ୟ ପୂର୍ଣ୍ଣ କରିଦେବେ ।

ତେଣୁ କେବଳ ଶ୍ରୀହରିନାମକୀର୍ତ୍ତନ ନୁହେଁ, ନବବିଧା ଭକ୍ତିର ଯେ କୌଣସି ଅଙ୍ଗର ଅନୁଷ୍ଠାନରେ ମନଃସଂଯୋଗ ଯେ ଏକାନ୍ତ ଆବଶ୍ୟକ, ଏହା ସର୍ବଶାସ୍ତ୍ରସମ୍ମତ କଥା ।

ଶ୍ରୀଲ ରୂପ ଗୋସ୍ୱାମୀ ଉଲ୍ଲେଖ କରିଛନ୍ତି–

ସାଧନୌଘୈରନାସଙ୍ଗୈରଲଭ୍ୟା ସୁଚିରାଦପି ।
ହରିଣା ଚାଶ୍ୱଦେୟେତି ଦ୍ୱିଧା ସା ସ୍ୟାତ୍ ସୁଦୁର୍ଲଭା ॥
(ଶ୍ରୀଭ:ର:ସି: ୧।୧।୩୫)

ବହୁକାଳ ଅନାସଙ୍ଗ ଅର୍ଥାତ୍ ଅଯତ୍ନଶୀଳ ହୋଇ ସାଧନ କଲେ ପ୍ରେମ ଲାଭ ହେବ ନାହିଁ । ପୁଣି ସାସଙ୍ଗ ଅର୍ଥାତ୍ ଯତ୍ନଶୀଳ ହୋଇ ସାଧନ କଲେ ମଧ୍ୟ ହୃଦୟରୁ ଭୋଗ-ମୋକ୍ଷବାସନା ଦୂର ହୋଇ ମହତ୍‌କୃପାରୁ ତହିଁରେ ଭକ୍ତିବାସନା ବା ଶ୍ରୀକୃଷ୍ଣଙ୍କ ପ୍ରୀତିବିଧାନବାସନାର ସଞ୍ଚାର ନ ହେବା ପର୍ଯ୍ୟନ୍ତ ପ୍ରେମଲାଭ ହେବ ନାହିଁ ।

ଅନେକ ସୁବିଧାବାଦୀ କହିଥାନ୍ତି–‘‘ଏକ ହରିନାମେ ପାପୀର ଯତ ପାପ ହରେ । ପାପୀର କି ସାଧ ଆଛେ ତତ ପାପ କରେ ॥’’ ଅର୍ଥାତ୍ ଥରେ ‘ହରି’ ଶବ୍ଦ ଉଚ୍ଚାରଣର ଯେଉଁ ପାପହରଣ ଶକ୍ତି ଅଛି, କୌଣସି ବ୍ୟକ୍ତି ତା ଜୀବନକାଳରେ ଏତେ ପାପ କରି ପାରିବ ନାହିଁ । ତେଣୁ ଯେ ଯେତେ ପାପ କରୁନା କାହିଁକି, ଗୋଟିଏ ହରିନାମକୁ ତାର ପାପ ନିଅଣ୍ଟ । ତେଣୁ ପାପ ଯାହା କରୁଥାଅ ନା କାହିଁକି ସବୁବେଳେ ହରିନାମ କର ।

ଏହା ସୁବିଧାବାଦୀଙ୍କ ମତ । ଏହିପ୍ରକାର ବିଚାର ଶ୍ରୀହରିନାମ ପ୍ରତି ଘୋର ଅଶ୍ରଦ୍ଧାର ହିଁ ପରିଚାୟକ ଏବଂ ନାମ ବଳେ ପାପ ଚଳାଇବାର ଗୋଟିଏ ହୀନ ଚିତ୍ତବୃତ୍ତି । ଗୋଟିଏ ହରିନାମର ଯେ ଅଶେଷ ପାପ ହରଣ ଶକ୍ତି ଅଛି, ଏକଥା ଦୃଢ଼ ସତ୍ୟ । ଏହା ବୋଲି ହରିନାମ ଶ୍ରୀହରିଙ୍କ କୃପାଲାଭ ଆଶାରେ ତାଙ୍କ ସୁଖ ପାଇଁ ନ କରି ନିଜର ପାପକ୍ଷୟ ପାଇଁ କରିବା ଏବଂ ନାମ ବଳରେ ପାପ ଚଳାଇବାର ପ୍ରବୃତ୍ତି ପୋଷଣ କରିବା ଦୁରନ୍ତ ଅପରାଧ । ଏହି ଅପରାଧର ଫଳ ଏହିପ୍ରକାର ନାମକୀର୍ତ୍ତନକାରୀକୁ ଅବଶ୍ୟ ଭୋଗିବାକୁ ପଡ଼ିବ । ତେଣୁ ସାଧୁ ସାବଧାନ ! ଏହିପ୍ରକାର ବ୍ୟକ୍ତିଙ୍କ ସଙ୍ଗରୁ ସର୍ବଦା ଦୂରରେ ରହିବ । ସର୍ବଦା ଶ୍ରୀକୃଷ୍ଣସ୍ମୃତି ହୃଦୟରେ ଜାଗ୍ରତ ରଖି ତାଙ୍କ ପ୍ରୀତି ଉଦ୍ଦେଶ୍ୟରେ ନିଷ୍ପାପ ହୋଇ ସବୁପ୍ରକାର ଭକ୍ତ୍ୟଙ୍ଗର ଅନୁଷ୍ଠାନ କରିବା ହିଁ ଶାସ୍ତ୍ରୀୟ ବିଧାନ ।

ଆଉ ଗୋଟିଏ ବିଷୟ ଏଠାରେ ବିଶେଷ ପ୍ରଣିଧାନଯୋଗ୍ୟ । ତାହା ହେଲା **ଭକ୍ତିଜାତ ଅନର୍ଥ** । ଶ୍ରୀଲ ବିଶ୍ୱନାଥ ଚକ୍ରବର୍ତ୍ତିପାଦ ତାଙ୍କ ମାଧୁର୍ଯକାଦମ୍ବିନୀରେ ଅନର୍ଥ ସମ୍ବନ୍ଧରେ ଏହିପରି ଉଲ୍ଲେଖ କରିଛନ୍ତି–ଅନର୍ଥ ଚାରିପ୍ରକାର; ଯଥା (୧) ସୁକୃତଜାତ (ପୂର୍ବ ଜନ୍ମର ପୁଣ୍ୟ ଫଳରୁ ଜାତ), ଦୁଷ୍କୃତଜାତ (ପୂର୍ବ ଜନ୍ମର ପାପ ଫଳରୁ ଜାତ), ଅପରାଧଜାତ (ପୂର୍ବ

ଜନ୍ମର ଅପରାଧ ଫଳରୁ ଜାତ) ଓ ଭକ୍ତିଜାତ (ନାମ କୀର୍ତ୍ତନାଦି ଭକ୍ତି କରି ମଧ୍ୟ ଶ୍ରୀକୃଷ୍ଣଙ୍କ ସୁଖଚିନ୍ତା ନ କରି କେବଳ ପ୍ରତିଷ୍ଠାଦି ଲାଭର ଆଶାପୋଷଣ)।

ମହତ୍‌କୃପାରୁ ଶ୍ରୀହରିନାମ ଜପ ବା କୀର୍ତ୍ତନ ସମୟରେ ଶ୍ରୀକୃଷ୍ଣଙ୍କ ସୁଖଚିନ୍ତା ହୃଦୟରେ ନ ଥିଲେ ରଜୋଗୁଣ ପ୍ରଭାବରେ ପ୍ରତିଷ୍ଠାଶା ଯେ ହୃଦୟରେ ଅବଶ୍ୟ ଜାଗିବ, ଏହା ନିଃସନ୍ଦେହ। ଏହା ଅନ୍ୟାଭିଳାଷିତା। ସୁତରାଂ ଏହା ଶ୍ରୀକୃଷ୍ଣଙ୍କ କୃପାଲାଭର ଘୋର ଅନ୍ତରାୟ।

ଏହିପ୍ରକାର ଭକ୍ତି କରିବା ସମୟରେ ଶ୍ରୀକୃଷ୍ଣଙ୍କ ସୁଖଚିନ୍ତା ପରିବର୍ତ୍ତେ ପ୍ରତିଷ୍ଠାଲାଭରୂପକ ଆଶା ହୃଦୟରେ ବଳବତ୍ତର ଥିବାରୁ ଏହି ଚିନ୍ତା ଚିତ୍ତକୁ ଶ୍ରୀକୃଷ୍ଣଙ୍କ ପାଦପଦ୍ମରୁ ବହୁ ଦୂରକୁ ନେଇଯାଏ। ଭକ୍ତି ତ ଅଭ୍ୟାସସାଧ୍ୟ ନୁହେଁ, ଏହା କେବଳ ମହତ୍‌କୃପାଲଭ୍ୟ। ସୁତରାଂ ଏଥିରେ ସାଧକର କିଛି କୃତିତ୍ୱ ନାହିଁ। ମହତ୍‌କୃପାଲାଭ ଉଦ୍ଦେଶ୍ୟରେ ବ୍ୟାକୁଳ କ୍ରନ୍ଦନ କରି ଶ୍ରୀକୃଷ୍ଣନାମ କୀର୍ତ୍ତନ କଲେ ମହତ୍‌କୃପାରୁ ହ୍ଲାଦିନୀ ଶକ୍ତି ସାଧକ ହୃଦୟରେ ପ୍ରବେଶ କରି ତା ହୃଦୟକୁ ବିଗଳିତ କରାନ୍ତି ଏବଂ ଶ୍ରୀକୃଷ୍ଣଙ୍କ ସୁଖଚିନ୍ତା ତା ହୃଦୟରେ ସଞ୍ଚାର କରି ଦିଅନ୍ତି। ଏହା ହିଁ ସାଧନର ଫଳ ବୋଲି ଶ୍ରୀଳ ଜୀବ ଗୋସ୍ୱାମୀ ପ୍ରଭୁ ଶ୍ରୀପ୍ରୀତିସନ୍ଦର୍ଭ ୬୫ତମ ଅନୁଃରେ ଉଲ୍ଲେଖ କରିଛନ୍ତି—"ତସ୍ୟା ହ୍ଲାଦିନ୍ୟା ଏବ କାପି ସର୍ବାନନ୍ଦାତିଶାୟିନୀ ବୃତ୍ତିର୍ନିତ୍ୟଂ ଭକ୍ତବୃନ୍ଦେଷ୍ୱେବ ନିକ୍ଷିପ୍ୟମାଣା ଭଗବତ୍‌ପ୍ରୀତ୍ୟାଖ୍ୟୟା ବର୍ତ୍ତତେ। ଅତସ୍ତଦନୁଭବେନ ଶ୍ରୀଭଗବାନପି ଶ୍ରୀମଦ୍‌ଭକ୍ତେଷୁ ପ୍ରୀତ୍ୟତିଶୟଂ ଭଜତ।" ଅର୍ଥାତ୍ କରୁଣାମୟ ଭଗବାନଙ୍କର ସମସ୍ତ ଆନନ୍ଦକୁ ଟପି ଯାଉଥିବା ହ୍ଲାଦିନୀର କୌଣସି ଏକ ସର୍ବାନନ୍ଦାତିଶାୟିନୀ ବୃତ୍ତି ନିତ୍ୟକାଳ ଭକ୍ତମାନଙ୍କ ମଧ୍ୟରେ ନିକ୍ଷିପ୍ତ ହୋଇ ଭଗବତ୍ ପ୍ରୀତି ନାମରେ ବର୍ତ୍ତମାନ ରହିଛି। ତାହା ଅନୁଭବ କରି ଶ୍ରୀଭଗବାନ୍ ମଧ୍ୟ ଭକ୍ତମାନଙ୍କର ଅତିଶୟ ପ୍ରୀତିଭାଗୀ ହୁଅନ୍ତି।

ସୁବଳ ! ଶ୍ରୀଜୀବପାଦଙ୍କର ଏହି ଶିକ୍ଷାକୁ ହୃଦୟରେ ଧାରଣ କରି ସେହି ହ୍ଲାଦିନୀଙ୍କ କୃପାଲାଭ ଉଦ୍ଦେଶ୍ୟରେ ବ୍ୟାକୁଳ କ୍ରନ୍ଦନ କରି ଭକ୍ତିସାଧନରେ ପ୍ରବୃତ୍ତ ହୁଅ। ତାହାହେଲେ ଏହି ଜନ୍ମରେ ହିଁ ନିଶ୍ଚିତରୂପେ ପ୍ରେମଲାଭର ଅଧିକାରୀ ହୋଇ ଜୀବନ ସାର୍ଥକ କରିପାରିବ।

**ସୁବଳ**—ଆଜ୍ଞା, ଆପଣ ଯାହା କହିଲେ, ସବୁ ତ ଶାସ୍ତ୍ରପ୍ରମାଣ ଦେଇ କହିଛନ୍ତି। ତେଣୁ ଆପଣଙ୍କ କଥା ଯେ ସମ୍ପୂର୍ଣ୍ଣ ଶାସ୍ତ୍ରସମ୍ମତ, ଏ ବିଷୟରେ ମୋର ତିଳେମାତ୍ର ସନ୍ଦେହ ନାହିଁ। ଆପଣଙ୍କ କହିବା ଲକ୍ଷଣ ତ ସବୁ ମୋଠାରେ ପରିପୂର୍ଣ୍ଣରୂପେ ଅଛି। ହରିନାମ କଲାବେଳେ ମୋ ମନ ମୋର ସମସ୍ତ ଯତ୍ନ ଓ ଚେଷ୍ଟା ସତ୍ତ୍ୱେ ସର୍ବଦା ଅନ୍ୟ ଚିନ୍ତାରେ ମଗ୍ନ ରହୁଛି। ତାହା ମଧ୍ୟ ଅନେକ ସମୟରେ ମୋ ଅଜ୍ଞାତସାରରେ ହେଉଛି। ସେ ବିଷୟରେ ମୋର ଜ୍ଞାନ ଆସିଲାବେଳକୁ ହୁଏତ ଘଣ୍ଟା ଘଣ୍ଟା କାଳ ବିତିଯାଇଛି। ମୁଁ ଯେ ସ୍ମୃତିଯୁକ୍ତ ହୋଇ ହରିନାମ କରିବାକୁ ଚେଷ୍ଟା ନ କରୁଛି, ତାହା ନୁହେଁ, କିନ୍ତୁ କଲେ କଅଣ ହେବ ? ମୋର ଚେଷ୍ଟା ସମ୍ପୂର୍ଣ୍ଣ ମୂଲ୍ୟହୀନ ହୋଇଯାଉଛି। ମୋତେ ତ ଚତୁର୍ଦ୍ଦିଗ ଅନ୍ଧାର ଦିଶିଲାଣି। ଏ ଜନ୍ମ କଅଣ ବ୍ୟର୍ଥ ହୋଇଯିବ ?

**ବାବାଜୀ ମହାରାଜ**—ତୁମେ ବ୍ୟସ୍ତ ହୁଅ ନା । ତୁମେ ଅନାସଙ୍ଗ ହୋଇ ଯେଉଁ ହରିନାମ କୀର୍ତ୍ତନ କରୁଛ ଏହାଦ୍ୱାରା ପୁଣ୍ୟଫଳମାତ୍ର ଅର୍ଜିତ ହେବ, ଯାହା ଭକ୍ତିର ପ୍ରତିବନ୍ଧକ । ଏହି ପୁଣ୍ୟଫଳରେ ଦେବତା ହୋଇ ସ୍ୱର୍ଗକୁ ଯିବ । ଦେବଦେହରେ ମଧ୍ୟ ସେହି ଭୋଗସ୍ପୃହା ତୁମକୁ ବିଚଳିତ କରିଦେବ ଏବଂ ତୁମ ଜନ୍ମଜନ୍ମାନ୍ତରର ଅର୍ଜିତ ଅପରାଧ ତୁମକୁ ସାଧୁସଙ୍ଗଠାରୁ ଦୂରେଇ ରଖିବ । ଅର୍ଥାତ୍ ସାଧୁଙ୍କ ସଙ୍ଗ ପାଇଲେ ମଧ୍ୟ ତୁମେ ତାଙ୍କୁ ଚିହ୍ନି ନ ପାରି ତାଙ୍କ ଚରଣରେ ଘୋର ଅପରାଧ କରିବ । ତେଣୁ ତୁମର ଭକ୍ତିପଥ ଚିରଦିନ ପାଇଁ ରୁଦ୍ଧ ହୋଇଯିବ । ଯେଉଁ ଶ୍ରୀନାରଦଙ୍କ କୃପା ପାଇ ନଳକୂବର ଓ ମଣିଗ୍ରୀବ ଭକ୍ତିଲାଭ କଲେ, ଦେବତାମାନେ ଦୈନିକ ସେହି ନାରଦଙ୍କ ସଙ୍ଗ ପାଇ ମଧ୍ୟ ତାଙ୍କୁ ମହତ୍‌ଜ୍ଞାନ ନ କରି ପୁଣ୍ୟବାନ୍ ଋଷିବିଶେଷରୂପେ ଦର୍ଶନ କରିଥିଲେ । ତେଣୁ ସେମାନେ ତାଙ୍କ କୃପାରୁ ବଞ୍ଚିତ ହେଲେ ।

**ସୁବଳ**—ନଳକୂବର ଓ ମଣିଗ୍ରୀବ କିଏ ?

**ବାବାଜୀ ମହାରାଜ**—ସେମାନେ କୁବେର ପୁତ୍ର । ଐଶ୍ୱର୍ଯମଦମତ୍ତ ହୋଇ ମନ୍ଦାକିନୀତଟରେ ବିବସ୍ତ୍ରା ସ୍ତ୍ରୀଗଣଙ୍କ ସହିତ ନଗ୍ନାବସ୍ଥାରେ ବିହାର କରୁଥିଲେ । ଏହି ସମୟରେ ଭ୍ରମଣ କରୁ କରୁ ଦୈବକ୍ରମେ ଦେବର୍ଷି ନାରଦ ସେଠାରେ ପହଞ୍ଚିଗଲେ । ତାଙ୍କୁ ଦେଖି ସ୍ତ୍ରୀମାନେ ଅଭିଶାପ ଭୟରେ ଓ ଲଜ୍ଜା ନିବାରଣ ଉଦ୍ଦେଶ୍ୟରେ ବସ୍ତ୍ର ପରିଧାନ କରିଥିଲେ କିନ୍ତୁ ଉଦ୍ଧତ ନଳକୂବର ଓ ମଣିଗ୍ରୀବ ବସ୍ତ୍ର ପରିଧାନ ନ କରି ସେହିପରି ଉଲଗ୍ନ ହୋଇ ଠିଆ ହୋଇଥିଲେ । ଶ୍ରୀନାରଦ ସେମାନଙ୍କର ଏହିପରି ଅବସ୍ଥା ଦେଖି ସେମାନଙ୍କୁ ବୃକ୍ଷ ହୋଇଯିବା ପାଇଁ ଅଭିଶାପ ଦେଇ କହିଲେ—ଦ୍ୱାପରରେ ଭଗବାନ୍ ଶ୍ରୀକୃଷ୍ଣ ଯେତେବେଳେ ଅବତୀର୍ଣ୍ଣ ହେବେ, ସେତେବେଳେ ସେ ତୁମ ଦୁହିଙ୍କୁ ମୋଚନ କରିବେ । ଶ୍ରୀନାରଦଙ୍କର ସେମାନଙ୍କ ପ୍ରତି ଏହି କୃପା କଥା ସ୍ମରଣ କରି ଉଦୁଖଳରେ ବନ୍ଧା ହୋଇଥିବା ଅବସ୍ଥାରେ ଶ୍ରୀକୃଷ୍ଣ ସେମାନଙ୍କୁ ଉଦ୍ଧାର କରିଥିଲେ । ଏହିପରି ପରମକରୁଣାମୟ ଯେ ଶ୍ରୀନାରଦ, ଦେବତାମାନେ ସବୁବେଳେ ତାଙ୍କ ସଙ୍ଗରେ ରହୁଥିଲେ ମଧ୍ୟ ତାଙ୍କୁ ଚିହ୍ନି ପାରି ନ ଥିଲେ । ତେଣୁ ତାଙ୍କ କୃପାର ଭାଜନ ହୋଇ ପାରି ନ ଥିଲେ ।

ସୁତରାଂ ଅନ୍ୟମନସ୍କ ହୋଇ କେବଳ ଶ୍ରୀହରିନାମ ଉଚ୍ଚାରଣ କଲେ ତାହା ଯେଉଁ ପୁଣ୍ୟଫଳ ପ୍ରସବ କରିବ, ତାହା କ୍ଷୟିଷ୍ଣୁ । ପୂର୍ବରୁ ଦେବଦେହ କଥା ଯାହା କହିଲି, ତା ଛଡ଼ା ଏହି ସଂସାରରେ ଖୁବ୍ ଧନବାନ୍, ରୂପବାନ୍ ଓ ଗୁଣବାନ୍ ହୋଇ ଜନ୍ମଗ୍ରହଣ ମଧ୍ୟ କରିପାରିବ । ଏହା ସବୁ କ୍ଷୟିଷ୍ଣୁ ଏବଂ ପୁଣ୍ୟ କ୍ଷୟ ହୋଇଗଲେ ପୁଣି ସଂସାରକୁ ଆସିବାକୁ ପଡ଼ିବ ।

ଏହି ହରିନାମ ସାଧନର ସୁଫଳପ୍ରାପ୍ତି ଉଦ୍ଦେଶ୍ୟରେ ଯେ ଅନୁକ୍ଷଣ କାନ୍ଦି କାନ୍ଦି ହରିନାମ ଉଚ୍ଚାରଣ କରିବ, ତାହାର କ୍ରନ୍ଦନଧ୍ୱନି ଶ୍ରୀକୃଷ୍ଣଙ୍କ ହୃଦୟରେ ପ୍ରବେଶ କରି, ତାଙ୍କୁ ତା ପ୍ରତି ଉନ୍ମୁଖ କରାଇବ, ଯେପରି ଦ୍ରୌପଦୀ ଓ ଗଜରାଜଙ୍କର ହୋଇଥିଲା । ସେତେବେଳେ ଆର୍ତ୍ତବନ୍ଧୁ ଶ୍ରୀକୃଷ୍ଣ ସେହି ଆର୍ତ୍ତ ଭକ୍ତକୁ ଦର୍ଶନ ଦେଇ ତାକୁ ନିଜ ପାଦପଦ୍ମକୁ ଟାଣି ନେବେ ।

ସୁତରାଂ କେବଳ ହରିନାମ ନୁହେଁ, କ୍ରନ୍ଦନଯୁକ୍ତ ହରିନାମ ହିଁ ଶ୍ରୀକୃଷ୍ଣଙ୍କ କୃପାକର୍ଷଣର ସର୍ବୋତ୍ତମ ଉପାୟ । ପୂର୍ବରୁ ମଧ୍ୟ ଏହା ତୁମକୁ କହିଛି । ଏ ବିଷୟରେ ଶ୍ରୀଳ ସନାତନ ଗୋସ୍ୱାମୀ ତାଙ୍କ ରଚିତ ଶ୍ରୀବୃହଦ୍ଭାଗବତାମୃତରେ ଏହିପରି ଉଲ୍ଲେଖ କରିଛନ୍ତି—

''ନାମସଂକୀର୍ତ୍ତନଂ ପ୍ରୋକ୍ତଂ କୃଷ୍ଣସ୍ୟ ପ୍ରେମସମ୍ପଦି ।
ବଳିଷ୍ଠଂ ସାଧନଂ ଶ୍ରେଷ୍ଠଂ ପରମାକର୍ଷମନ୍ତ୍ରବତ୍ ॥''

(ଶ୍ରୀବୃ:ଭା: ୨।୩।୧୬୪)

ଶ୍ରୀନାମସଂକୀର୍ତ୍ତନ ହିଁ ଶ୍ରୀକୃଷ୍ଣପ୍ରେମସମ୍ପତ୍ତିଲାଭର ଅନ୍ତରଙ୍ଗ ଓ ଅତି ବଳିଷ୍ଠ ସାଧନ । କାରଣ ଏହା ପରମାକର୍ଷକ ମନ୍ତ୍ରବତ୍ ।

ସରଳ ଭାବରେ ବ୍ୟାକୁଳ ହୃଦୟରେ ଶ୍ରୀଭଗବାନଙ୍କ ନାମ କୀର୍ତ୍ତନ କଲେ ତାହା ସିଦ୍ଧମନ୍ତ୍ରବତ୍ ଦୁର୍ଲଭତର ବସ୍ତୁକୁ ଦୂରରୁ ଆକର୍ଷଣ କରି ଆଣେ । ଅର୍ଥାତ୍ ସେହି ଆର୍ତ୍ତ ଭକ୍ତର ଆହ୍ୱାନରେ ଆର୍ତ୍ତବନ୍ଧୁ ଶ୍ରୀଭଗବାନ୍ ଭକ୍ତ ସମ୍ମୁଖରେ ଆବିର୍ଭୂତ ହୁଅନ୍ତି । (ଉକ୍ତ ଶ୍ଳୋକର ଶ୍ରୀଳ ସନାତନ ଗୋସ୍ୱାମିପାଦଙ୍କ ଟୀକା)

ସଲ୍ଲକ୍ଷଣଂ ପ୍ରେମଭରସ୍ୟ କୃଷ୍ଣେ କୈଶ୍ଚିଦ୍ରସଜ୍ଞୈରୁତ କଥ୍ୟତେ ତତ୍ ।
ପ୍ରେମ୍ଣୋ ଭରେଣୈବ ନିଜେଷ୍ଟନାମସଂକୀର୍ତ୍ତନଂ ହି ସ୍ଫୁରତି ସ୍ଫୁଟାର୍ତ୍ତ୍ୟା ॥
ନାମ୍ନାନ୍ତୁ ସଂକୀର୍ତ୍ତନମାର୍ତ୍ତିଭାରାନ୍ମେଘଂ ବିନା ପ୍ରାବୃଷି ଚାତକାନାମ୍ ।
ରାତ୍ରୌ ବିୟୋଗାତ୍ ସ୍ୱପତେ ରଥାଙ୍ଗୀବର୍ଗସ୍ୟ ଚାକ୍ରୋଶନବତ୍ ପ୍ରତୀହି ॥

(ଶ୍ରୀବୃ:ଭା: ୨।୩।୧୬୬-୧୬୭)

ଅର୍ଥାତ୍ ରସଜ୍ଞମାନେ ନାମସଂକୀର୍ତ୍ତନକୁ ହିଁ ପ୍ରେମର ସ୍ୱରୂପ ବୋଲି ନିଶ୍ଚୟ କରିଅଛନ୍ତି । ସେମାନେ କହନ୍ତି ନାମସଂକୀର୍ତ୍ତନ ହିଁ ଶ୍ରୀକୃଷ୍ଣପ୍ରେମର ଉତ୍କୃଷ୍ଟ ଲକ୍ଷଣ । କାରଣ ନିଜର ଇଷ୍ଟନାମ ପ୍ରାଣର ବ୍ୟାକୁଳତା ସହିତ ସ୍ପଷ୍ଟରୂପେ କୀର୍ତ୍ତନ କଲେ ତାହା ସ୍ୱୟଂ ପ୍ରେମଭରେ ସ୍ଫୂର୍ତ୍ତିପ୍ରାପ୍ତ ହୋଇଥାଏ ।

ବର୍ଷାକାଳରେ ମେଘ ବିନା ଚାତକର ଆର୍ତ୍ତନାଦ ଭଳି ଓ ରାତ୍ରିକାଳରେ ପତିବିୟୋଗ-ବିଧୁରା ଚକ୍ରବାକୀ ଓ କୁରରୀର କାତର ସ୍ୱରରେ ବିଳାପ କରି ପ୍ରିୟକୁ ଆହ୍ୱାନ କଲା ଭଳି ଭକ୍ତମାନେ ମଧ୍ୟ ପରମ ବିରହରୁ ଜାତ ପ୍ରେମାର୍ତ୍ତିରେ ଅଭିଭୂତ ହୋଇ ବ୍ୟାକୁଳ ହୃଦୟରେ ନାମସଂକୀର୍ତ୍ତନ କରିଥାନ୍ତି ।

ବର୍ଷାବିହୁନେ ଚାତକ ଯେପରି କଲବଲ ହେଉଥାଏ ଏବଂ ପତିବିରହବିଧୁରା ଚକ୍ରବାକୀ ଓ କୁରରୀ ଯେପରି ଅନୁକ୍ଷଣ ବ୍ୟାକୁଳ କ୍ରନ୍ଦନ କରୁଥାନ୍ତି, ସେହିପରି ବ୍ୟାକୁଳ କ୍ରନ୍ଦନ ହିଁ ନିଶ୍ଚିତରୂପେ ଶ୍ରୀକୃଷ୍ଣଙ୍କ କୃପାଦୃଷ୍ଟିକୁ ଆକର୍ଷଣ କରିବ ଏବଂ ସେତେବେଳେ ସେ ତୁମକୁ ନିଜ ପାଦପଦ୍ମରେ ସ୍ଥାନ ଦେବେ ।

ସୁତରାଂ ତୁମେ ଅଧୈର୍ଯ ନ ହୋଇ ସର୍ବଦା ନିଜର ଦୁର୍ଦ୍ଦୈବ କଥା ଚିନ୍ତା କରି ବ୍ୟାକୁଳ କ୍ରନ୍ଦନପୂର୍ବକ ଶ୍ରୀନାମକୀର୍ତ୍ତନ କର । ତାହାହେଲେ ନିଶ୍ଚିତରୂପେ ଏହି ଜନ୍ମରେ ହିଁ ପ୍ରେମଲାଭର ଯୋଗ୍ୟ ହୋଇପାରିବ । ସୁତରାଂ ଶ୍ରୀହରିନାମରୂପକ ସର୍ବଶ୍ରେଷ୍ଠ ସାଧନପଥକୁ ଆଶ୍ରୟ କରି ହତାଶ ହେବା ଆଦୌ ସଙ୍ଗତ ନୁହେଁ । ପରମ କରୁଣାମୟ ଶ୍ରୀକୃଷ୍ଣ ଯେ କଳିହତଜୀବକୁ ଉଦ୍ଧାର କରିବା ପାଇଁ ଶ୍ରୀରାଧାଭାବ ନେଇ ଶ୍ରୀଗୌରରୂପ ଧାରଣ କରି ଏହି କଳିଯୁଗରେ ଅବତୀର୍ଣ୍ଣ ହୋଇଥିଲେ ଏବଂ ଯାହାକୁ ଦେଖିଲେ ତାହାର କୌଣସି ସାଧନର ଅପେକ୍ଷା ନ କରି ତାକୁ ପ୍ରେମ ଦେଇଗଲେ, ସେହି ଗୌରହରିଙ୍କୁ କାନ୍ଦି କାନ୍ଦି ସର୍ବକ୍ଷଣ ଡାକିଲେ ଏହି ଜନ୍ମରେ ହିଁ ପ୍ରେମଲାଭ ସୁଲଭ ହୋଇଯିବ । ସୁତରାଂ ତୁମର ହତାଶ ହେବାର କୌଣସି କାରଣ ନାହିଁ ।

ଏହି କ୍ରନ୍ଦନଯୁକ୍ତ ହରିନାମକୀର୍ତ୍ତନକଥା ଶ୍ରୀଚୈତନ୍ୟଭାଗବତରେ ମଧ୍ୟ ଉଲ୍ଲିଖିତ ହୋଇଛି—

"ଭକ୍ତିଯୋଗ ଭକ୍ତିଯୋଗ ଭକ୍ତିଯୋଗଧନ ।
ଭକ୍ତି ଏଇ କୃଷ୍ଣନାମ ସ୍ମରଣ କ୍ରନ୍ଦନ ॥
କୃଷ୍ଣ ବଲି କାଁଦିଲେ ସେ କୃଷ୍ଣନାଥ ମିଲେ ।
ଧନେ କୁଲେ କିଛୁ ନହେ କୃଷ୍ଣ ନା ଭଜିଲେ ॥"

(ଶ୍ରୀଚୈ:ଭା: ୨।୨୩।୭୨-୭୩)

ଅର୍ଥାତ୍ ଶ୍ରୀକୃଷ୍ଣନାମ ସ୍ମରଣ ଓ କ୍ରନ୍ଦନ ହିଁ ଭକ୍ତି । 'କୃଷ୍ଣ' କହି କାନ୍ଦିଲେ ତାଙ୍କୁ ପାଇ ପାରିବା । ଏହା ହିଁ ଶ୍ରୀଚୈତନ୍ୟଲୀଳାର ବ୍ୟାସ ଶ୍ରୀଳ ବୃନ୍ଦାବନ ଦାସ ଠାକୁରଙ୍କର ପତିତ ଜୀବ ପ୍ରତି ଉପଦେଶ ।

ନାମକୀର୍ତ୍ତନ କେବଳ ଏକ ପ୍ରାଣହୀନ ଅନୁଷ୍ଠାନ ନୁହେଁ । ଏହାଦ୍ୱାରା ହୃଦୟର ଭାବ ଭଗବାନଙ୍କ ଶ୍ରୀପାଦପଦ୍ମରେ ଜ୍ଞାପିତ କରା ହୋଇଥାଏ । ଅନ୍ୟମନସ୍କ ଥିଲେ ଏହି ଭାବ ହୃଦୟରେ ଜାତ ହେବା ସମ୍ଭବ କି ? ନାମକୀର୍ତ୍ତନ ବେଳେ ଭଗବାନଙ୍କ ନାମ ଉଚ୍ଚାରଣ କରି ତାଙ୍କୁ ଆହ୍ୱାନ କରାଯାଏ ବା ଡକାଯାଏ । ହେ ପ୍ରଭୋ ! ମୋ ଦୁର୍ଦ୍ଦୈବ କଥା ଶୁଣ ଏବଂ ମୋର ସମସ୍ତ ଦୋଷ କ୍ଷମା କରି ମୋତେ ତୁମ ଶ୍ରୀପାଦପଦ୍ମରେ ସ୍ଥାନ ଦିଅ ।

ଶାସ୍ତ୍ରରେ ଅଛି—"ଯାଦୃଶୀ ଭାବନା ଯସ୍ୟ ସିଦ୍ଧିର୍ଭବତି ତାଦୃଶୀ ।" ଅର୍ଥାଦ୍ ଯେ ସାଧନକାଳରେ ଯେପରି ପ୍ରାର୍ଥନା କରିବ, ତଦନୁଯାୟୀ ଫଳ ପାଇବ । ଶ୍ରୀଳ ସନାତନ ଗୋସ୍ୱାମୀ ପ୍ରଭୁ କହିଲେ—"ଉପାସନାନୁସାରେଣ ଦତ୍ତେ ହି ଭଗବାନ୍ ଫଳମ୍ ।" (ଶ୍ରୀବୃ:ଭା:୨।୪।୧୮୯) ଅର୍ଥାତ୍ ଉପାସନାକାଳରେ ଯେଉଁ ପ୍ରାର୍ଥନା କରାଯାଏ, ଭଗବାନ୍ ତଦନୁରୂପ ଫଳ ଦିଅନ୍ତି । ଶ୍ରୀଗୀତାରେ ମଧ୍ୟ ଶ୍ରୀକୃଷ୍ଣ କହିଛନ୍ତି—

"ଅନ୍ତକାଳେ ଚ ମାମେବ ସ୍ମରନ୍ ମୁକ୍ତ୍ୱା କଳେବରମ୍ ।
ଯଃ ପ୍ରୟାତି ସ ମଦ୍ଭାବଂ ଯାତି ନାସ୍ତ୍ୟତ୍ର ସଂଶୟଃ ॥

ଯଂ ଯଂ ବାପି ସ୍ମରନ୍ ଭାବଂ ତ୍ୟଜତ୍ୟନ୍ତେ କଳେବରମ୍ ।
ତଂ ତମେବୈତି କୌନ୍ତେୟ ସଦା ତଦ୍ଭାବଭାବିତଃ ॥''

ଅର୍ଥାତ୍ ଯେ ଅନ୍ତକାଳରେ (ମୃତ୍ୟୁସମୟରେ) ମୋତେ ସ୍ମରଣ କରୁ କରୁ ଦେହ ତ୍ୟାଗ କରେ, ସେ ସାକ୍ଷାତରେ ମୋ ସ୍ୱରୂପ ଲାଭ କରେ । ହେ ଅର୍ଜୁନ ! ଯେ ମୃତ୍ୟୁସମୟରେ ଯେଉଁ ଭାବ ସ୍ମରଣ କରୁ କରୁ ଦେହ ତ୍ୟାଗ କରେ, ତା ହୃଦୟ ଜୀବିତାବସ୍ଥାରେ ସର୍ବଦା ସେହି ଭାବରେ ମଗ୍ନ ଥିବାରୁ ସେ ସେହି ଭାବଭାବିତ ବିଷୟକୁ ହିଁ ଲାଭ କରେ ।

ଶ୍ରୀକୃଷ୍ଣଙ୍କର ଏହି ଉପଦେଶରୁ ସ୍ପଷ୍ଟ ଜଣାଯାଏ ଯେ, ସାଧନକାଳରେ ଯେ ସର୍ବଦା ତାଙ୍କୁ ସ୍ମରଣ କରିଥାଏ, ମୃତ୍ୟୁସମୟରେ ସେ ତାଙ୍କରି ସ୍ମରଣ ନେଇ ମୃତ୍ୟୁ ବରଣ କରିଥାଏ । ସୁତରାଂ ସାଧନକାଳରେ ସର୍ବକ୍ଷଣ ଶ୍ରୀକୃଷ୍ଣଙ୍କ ସ୍ମୃତି ହୃଦୟରେ ବିଦ୍ୟମାନ ଥିଲେ ମୃତ୍ୟୁ ସମୟରେ ସେହି ସ୍ମୃତି ଅବଶ୍ୟ ହୃଦୟରେ ଜାଗିବ ।

ଏହି ସ୍ମୃତିର ତାରତମ୍ୟ କଥା ଶ୍ରୀମଦ୍ଭାଗବତରେ ଏହିପରି କୁହାଯାଇଛି–କଂସ ଓ ଶିଶୁପାଳାଦି ଶତ୍ରୁରୂପେ ସର୍ବଦା ଶ୍ରୀକୃଷ୍ଣଙ୍କ ସ୍ମରଣ କରି ଶ୍ରୀକୃଷ୍ଣଙ୍କ ହସ୍ତରେ ନିହତ ହୋଇ ସାଯୁଜ୍ୟ ମୁକ୍ତି ଲାଭ କରିଥିଲେ । ଶତ୍ରୁରୂପେ ସ୍ମରଣ କରି ଯଦି ଜଣେ ମୁକ୍ତି ପାଇ ପାରିଲା, ତେବେ ସାଧନକାଳରେ ତାଙ୍କୁ ପ୍ରିୟତମରୂପେ ସ୍ମରଣ କରି ଦେହତ୍ୟାଗ କଲେ ମୃତ୍ୟୁ ପରେ ଯେ ତାଙ୍କ ପ୍ରେମସେବା ଅବଶ୍ୟ ଲାଭ ହେବ, ଏହା ନିଃସନ୍ଦେହ ।

ଏହିସବୁ ଶାସ୍ତ୍ରପ୍ରମାଣରୁ ଓ ସଂକୀର୍ତ୍ତନୈକପିତା ଶ୍ରୀଗୌରହରିଙ୍କ ଶିକ୍ଷାରୁ ସ୍ପଷ୍ଟ ସୂଚିତ ହେଲା ଯେ, ସାଧନକାଳରେ ଉପାସ୍ୟଦେବଙ୍କ ଶ୍ରୀପାଦପଦ୍ମରେ ସକ୍ରନ୍ଦନ ବ୍ୟାକୁଳ ପ୍ରାର୍ଥନାପୂର୍ବକ ତାଙ୍କ ନିଜଜନ ମହତ୍ଙ୍କ ସଙ୍ଗ ଓ କୃପା ଲାଭ ଉଦ୍ଦେଶ୍ୟରେ ତାଙ୍କ ଶ୍ରୀପାଦପଦ୍ମରେ ନିଜର ଅଭିଳାଷ ଜଣାଇବା ହିଁ ସର୍ବଶ୍ରେଷ୍ଠ ସାଧନ । ଏ ସମ୍ବନ୍ଧରେ ଶ୍ରୀମଦ୍ଭାଗବତରେ ଶ୍ରୀଅମ୍ବରୀଷ ମହାରାଜଙ୍କ ଉପାଖ୍ୟାନରେ ଏହିପରି ବର୍ଣ୍ଣିତ ହୋଇଛି–

''ସ ବୈ ମନଃ କୃଷ୍ଣପଦାରବିନ୍ଦୟୋଃ... କାମଞ୍ଚ ଦାସ୍ୟେ ନ ତୁ କାମକାମ୍ୟୟା ଯଥୋତ୍ତମଃଶ୍ଳୋକଜନାଶ୍ରୟା ରତିଃ ।'' (ଶ୍ରୀଭା:୯।୪।୧୮-୨୦) ଏଠାରେ ଉତ୍ତମଃଶ୍ଳୋକ ଶ୍ରୀଭଗବାନଙ୍କର ପ୍ରୀତିଯୁକ୍ତ ସେବା ଲାଭ କରିବା ପାଇଁ ଭକ୍ତମାନଙ୍କର ଯେଉଁ ବ୍ୟାକୁଳତା, ସେହି ବ୍ୟାକୁଳତା କାମନା କରି ହିଁ ଶ୍ରୀହରିନାମଗ୍ରହଣ କରିବା ଉଚିତ ବୋଲି କୁହାଯାଇଛି । ସେହି ଲାଭ ହିଁ ସାଧକର ସର୍ବଶ୍ରେଷ୍ଠ ଲାଭ ।

ଶ୍ରୀଳ ଜୀବଗୋସ୍ୱାମିପାଦ ଉଲ୍ଲେଖ କରିଛନ୍ତି–''ଅତ୍ର ମରଣେ ସର୍ବେଷାଂ ଦୈନ୍ୟୋଦୟୋଽପି ଭଗବଦ୍ କୃପାତିଶୟଦ୍ୱାରମିତି ଦ୍ରଷ୍ଟବ୍ୟମ୍ ।'' (ଶ୍ରୀଭ:ସ:୧୬୬ ଅନୁ:)

ଅର୍ଥାତ୍ ମରଣ ସମୟରେ ସମସ୍ତଙ୍କର ଯେଉଁ ଦୈନ୍ୟର ଉଦୟ ହୁଏ, ତାହା ମଧ୍ୟ ଶ୍ରୀଭଗବାନଙ୍କର ଅତିଶୟ କୃପାଲାଭର ଦ୍ୱାରସ୍ୱରୂପ ବୋଲି ଜାଣିବାକୁ ହେବ ଅର୍ଥାତ୍ ଏହି

ଦୈନ୍ୟକୁ ଦ୍ୱାରରୂପେ ଅବଲମ୍ବନ କରି ସେହିପ୍ରକାର ବ୍ୟକ୍ତି ପ୍ରତି ଶ୍ରୀଭଗବାନଙ୍କର କୃପାର ଉଦୟ ହୋଇଥାଏ । ମରଣ ସମୟରେ ଭଗବାନଙ୍କ କୃପାଲାଭ ଉଦ୍ଦେଶ୍ୟରେ ବ୍ୟାକୁଳ କ୍ରନ୍ଦନ କରୁ କରୁ ଯେ ମୃତ୍ୟୁବରଣ କରେ ସେ ମୃତ୍ୟୁପରେ ଭଗବାନଙ୍କ ସାକ୍ଷାତ୍କାର ପାଇଥାଏ ବୋଲି ଶ୍ରୀଲ ପୁରୀଦାସ ଗୋସ୍ୱାମୀ ଠାକୁର ମଧ୍ୟ କହିଛନ୍ତି ।

ଶ୍ରୀରୂପପ୍ରଭୁ ଶ୍ରୀଭକ୍ତିରସାମୃତସିନ୍ଧୁରେ ଉଲ୍ଲେଖ କରିଛନ୍ତି—

"ଅନନ୍ୟମମତା ବିଷ୍ଣୌ ମମତା ପ୍ରେମସଙ୍ଗତା । ଭକ୍ତିରିତ୍ୟୁଚ୍ୟତେ ଭୀଷ୍ମପ୍ରହ୍ଲାଦୋଦ୍ଧବ-ନାରଦୈଃ ॥" (ଶ୍ରୀଭଃରଃସିଃ ୧।୪।୨) ଅର୍ଥାତ୍ ଅନ୍ୟ କୌଣସି ବସ୍ତୁ ପ୍ରତି ମମତା ନ ରଖି କେବଳ ଶ୍ରୀବିଷ୍ଣୁଙ୍କ ସୁଖ ପାଇଁ ତାଙ୍କ ପ୍ରତି ଯେଉଁ ମମତା ତାହାକୁ ହିଁ ଭୀଷ୍ମ, ପ୍ରହ୍ଲାଦ, ଉଦ୍ଧବ ଓ ନାରଦାଦି ଭକ୍ତି ବୋଲି କହିଛନ୍ତି ।

ଭକ୍ତି ଅର୍ଥ ସେବା । ଅର୍ଥାତ୍ ପ୍ରଥମେ ସେବ୍ୟଙ୍କ ପ୍ରତି ମମତାଜ୍ଞାନ ଓ ତାପରେ ସେବା । କାହା ପ୍ରତି ମମତା ନ ଥିଲେ ତାହାର ସେବା କରିବାକୁ ସ୍ୱତଃ ପ୍ରବୃତ୍ତି ଜାଗିବା ସମ୍ଭବ ନୁହେଁ । ସୁତରାଂ **ଭକ୍ତି ଅର୍ଥ ଶ୍ରୀକୃଷ୍ଣଙ୍କୁ ଭଲ ପାଇବା** । "କୃଷ୍ଣେନ୍ଦ୍ରିୟ ପ୍ରୀତିଇଚ୍ଛା ଧରେ 'ପ୍ରେମ' ନାମ ॥ (ଶ୍ରୀଚୈଃଚଃ ୧।୪।୧୪୧) ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ପ୍ରୀତିବାସନା ହିଁ ପ୍ରେମ ବା ଭକ୍ତି"— ଶ୍ରୀକୃଷ୍ଣଙ୍କୁ ଭଲ ପାଇବା ହିଁ ଭକ୍ତି । ଏହି ଭଲ ପାଇବାର ଅଧିକାର ଜୀବର ନାହିଁ । କାରଣ ଭଗବାନଙ୍କ ଜୀବଶକ୍ତିରୁ ତାକୁ ପରମାତ୍ମା ସୃଷ୍ଟି କରିଛନ୍ତି । ତେଣୁ ତା ହୃଦୟ ସତ୍ତ୍ୱ, ରଜଃ ଓ ତମଃ ଏହି ତ୍ରିଗୁଣ ଦ୍ୱାରା ଆଚ୍ଛନ୍ନ । ଏହି ତ୍ରିଗୁଣ ଜଡ଼ । ତେଣୁ ହୃଦୟ ଏହି ତ୍ରିଗୁଣରେ ଆଚ୍ଛନ୍ନ ଥିବା ପର୍ଯ୍ୟନ୍ତ ଏହା ଜୀବକୁ ସର୍ବଦା ନିଜ ସୁଖଚିନ୍ତାରେ ମଗ୍ନ କରାଇବ । ତା' ହୃଦୟରେ ଭଗବାନଙ୍କ ସୁଖଚିନ୍ତା ଜାଗିବାକୁ ଦେବ ନାହିଁ । ଭଗବାନଙ୍କ ସୁଖଚିନ୍ତା ତାଙ୍କ ସ୍ୱରୂପସ୍ଥିତ ହ୍ଲାଦିନୀର ବୃତ୍ତି । ସେହି ହ୍ଲାଦିନୀ ଶକ୍ତି ଜୀବହୃଦୟରେ ପ୍ରବେଶ କଲେ ଭଗବାନଙ୍କ ସୁଖଚିନ୍ତା ଜୀବର ସ୍ୱତଃସ୍ଫୂର୍ତ୍ତ ହୋଇଯିବ । **ଜୀବହୃଦୟରେ ଭଗବାନଙ୍କ ପ୍ରତି ପ୍ରୀତି ଜାତ କରାଇବା ଉଦ୍ଦେଶ୍ୟରେ ପରମକରୁଣାମୟ ଭଗବାନ୍ ନିତ୍ୟକାଳ ତାଙ୍କ ହ୍ଲାଦିନୀଶକ୍ତିଙ୍କୁ ଭକ୍ତମାନଙ୍କ ହୃଦୟକୁ ନିକ୍ଷେପ କରୁଛନ୍ତି ଏବଂ ଏହା ଭକ୍ତମାନଙ୍କ ହୃଦୟରେ ଭଗବତ୍ ପ୍ରୀତିରୂପେ ଅବସ୍ଥାନ କରି ସେମାନଙ୍କୁ ଭଗବାନଙ୍କ ପ୍ରତି ପ୍ରୀତିଯୁକ୍ତ କରାଉଛି । ଏହା ପୂର୍ବରୁ କହିଛି । ସେହି ଭକ୍ତମହତ୍‌ମାନଙ୍କ ସଙ୍ଗ ଓ କୃପାରୁ ଜୀବ ଭଗବାନଙ୍କ ପ୍ରତି ପ୍ରୀତିଯୁକ୍ତ ହୋଇଥାଏ । ସେହି ହେତୁରୁ 'ଉତ୍ତମଃଶ୍ଳୋକଜନାଶ୍ରୟା ରତିଃ' କଥା ଶ୍ରୀମଦ୍ଭାଗବତରେ ଶ୍ରୀଅମ୍ବରୀଷ ଉପାଖ୍ୟାନରେ କୁହାଯାଇଛି ।**

ଭଗବାନଙ୍କ ପ୍ରତି ପ୍ରୀତିଯୁକ୍ତ ହୋଇପାରିଲେ ତାଙ୍କ ନାମକୀର୍ତ୍ତନାଦି ଭକ୍ତି ତାଙ୍କ ସୁଖାନୁସନ୍ଧାନାବେଶ ସହିତ କରାଯାଇ ପାରିବ । ଏହା ହିଁ ଶୁଦ୍ଧଭକ୍ତିପଦବାଚ୍ୟ । ସୁତରାଂ ଏଠାରେ ସ୍ମୃତିହୀନ ନାମକୀର୍ତ୍ତନ କରିବାର ପ୍ରଶ୍ନ ନାହିଁ ।

ଏହି ହ୍ଲାଦିନୀର କୃପା ଯାହା ପ୍ରତି ନାହିଁ, ଭକ୍ତି କରିବାର ଅଧିକାର ମଧ୍ୟ ତାହାର ନାହିଁ । ସେଠାରେ ସେ ନାମକୀର୍ତ୍ତନାଦି ଭକ୍ତିର ଅଭ୍ୟାସମାତ୍ର କରିଥାଏ ଏବଂ ଏହାକୁ ହିଁ ସେ

ଭକ୍ତିଯୋଗ ମନେ କରେ । ଏହା ବସ୍ତୁତଃ ଭକ୍ତିଯୋଗ ନୁହେଁ, ପୁଣ୍ୟକର୍ମ ମାତ୍ର । ଏହାକୁ ପୁଣ୍ୟକର୍ମ କହିବାର ଉଦ୍ଦେଶ୍ୟ ଏହି ଯେ, ହ୍ଲାଦିନୀଙ୍କ କୃପାଶକ୍ତି ସଞ୍ଚାରିତ ନ ହୋଇ ସାଧକ ତାର ରଜସ୍ତମୋଗୁଣଦ୍ୱାରା ଚାଳିତ ହୋଇ ଏହି ଭକ୍ତି କରୁଛି । ତେଣୁ ଏହି ଭକ୍ତି କେତେବେଳେ ରାଜସୀ, କେତେବେଳେ ତାମସୀ ଓ କେତେବେଳେ ସାତ୍ତ୍ୱିକୀ ହୋଇଥାଏ । ଏହାକୁ ସଗୁଣା ଭକ୍ତି ବୋଲି ଶ୍ରୀମଦ୍ଭାଗବତ (୩।୨୯।୭) ରେ କୁହାଯାଇଛି । ଏହା ବସ୍ତୁତଃ ଭକ୍ତି ନୁହେଁ, କର୍ମମାତ୍ର । ଏହାକୁ ଶ୍ରୀଜୀବପାଦ ଆରୋପସିଦ୍ଧା ଭକ୍ତି ବୋଲି ଶ୍ରୀଭକ୍ତିସନ୍ଦର୍ଭରେ କହିଛନ୍ତି । ଏହି ଆରୋପସିଦ୍ଧା ଭକ୍ତିକୁ କର୍ମମିଶ୍ରା ଭକ୍ତି ବା କର୍ମାର୍ପଣ କୁହାଯାଏ । ତେବେ ଭକ୍ତମହତଙ୍କ ସଙ୍ଗ ଓ ତାଙ୍କ କୃପାରୁ ଯେ ନିଜର କୌଣସି ସ୍ୱାର୍ଥସିଦ୍ଧି ଚିନ୍ତା ନ କରି କେବଳ ଭଗବାନଙ୍କ ସୁଖ ଉଦ୍ଦେଶ୍ୟରେ ଏହି କର୍ମମିଶ୍ରା ଭକ୍ତିର ଅନୁଷ୍ଠାନ କରିଥାଏ, ତାହାକୁ ଭକ୍ତିମାତ୍ରକାମ କର୍ମାର୍ପଣ କୁହାଯାଏ । ଏହିପ୍ରକାର ସାଧକ ମହତଙ୍କ ସଙ୍ଗ ଓ କୃପା ଲାଭ କରି ଅନ୍ତର୍ଯାମିଦୃଷ୍ଟିରେ ଭୂତାଦରପୂର୍ବକ ଏହି ଭକ୍ତିମାତ୍ରକାମ କର୍ମାର୍ପଣ କରୁ କରୁ କାଳକ୍ରମେ ରଜସ୍ତମୋଗୁଣମୁକ୍ତ ହୋଇ ଶୁଦ୍ଧଭକ୍ତିସାଧନର ଅଧିକାରୀ ହୋଇଥାଏ ।

ଏହା ନ କରି ଯେ ତାହାର ଏହି ରାଜସୀ ଓ ତାମସୀ ଭକ୍ତିକୁ ଭକ୍ତି ଜ୍ଞାନ କରି ଉତ୍ସାହ ସହକାରେ ତାହାକୁ ହିଁ ଅଭ୍ୟାସ କରିଥାଏ, ଏହା ଭକ୍ତିଲାଭର ସହାୟକ ନ ହୋଇ 'ଭକ୍ତିଜାତ ଅନର୍ଥ' ନାମରେ ଅଭିହିତ ହୋଇଥାଏ ।

ଅଧୁନା ଜଗତରେ ଅଧିକାଂଶ ଲୋକ ଏହି ଭକ୍ତିଜାତ ଅନର୍ଥକୁ ହିଁ ଭକ୍ତି ମନେ କରି ରାଜସୀ ଓ ତାମସୀ ଭକ୍ତିର ଆଚରଣ କରୁଅଛନ୍ତି ଓ ଏହା ଫଳରେ ବଞ୍ଚିତ ହେଉଛନ୍ତି ।

ଶ୍ରୀଲ ସନାତନପାଦ ଶ୍ରୀବୃହଦ୍ଭାଗବତାମୃତର ଟୀକାରେ ଉଲ୍ଲେଖ କରିଛନ୍ତି—"ଭକ୍ତିରେବ ଯୋଗଃ ଶ୍ରୀବୈକୁଣ୍ଠଲୋକ-ପ୍ରାପ୍ତ୍ୟୁପାୟଃ, ଭଗବଚ୍ଚରଣାରବିନ୍ଦସଂଯୋଗରୂପୋ ବା ।" ଅର୍ଥାତ୍ ଭକ୍ତି ହିଁ ଯୋଗ ଅର୍ଥାତ୍ ବୈକୁଣ୍ଠଲୋକପ୍ରାପ୍ତିର ଉପାୟ ଅଥବା ଭଗବତ୍ପାଦପଦ୍ମରେ ସଂଯୋଗକାରୀ । ଏଠାରେ ମଧ୍ୟ ଭକ୍ତିସାଧନ ସମୟରେ ଶ୍ରୀଭଗବତ୍ପାଦପଦ୍ମରେ ଚିତ୍ତ ଲଗ୍ନ ହେବା କଥା କୁହାଗଲା ।

ସ୍ୱୟଂ ସଂକୀର୍ତ୍ତନୈକପିତା ଶ୍ରୀଗୌରହରି ଓ ତାଙ୍କ ଅନୁଗତ ଶ୍ରୀସନାତନ, ଶ୍ରୀରୂପ ଓ ଶ୍ରୀଜୀବପାଦ ଇତ୍ୟାଦିଙ୍କର ଏହିସମସ୍ତ ଉକ୍ତିରୁ ଶ୍ରୀହରିନାମକୀର୍ତ୍ତନ ସମୟରେ ତହିଁରେ ମନଃସଂଯୋଗ ଯେ ଅବଶ୍ୟ ରହିବ, ଏହା ପ୍ରମାଣିତ ହେଉଛି । ପୁଣି ଏହି ମନଃସଂଯୋଗ ଆର୍ତ୍ତିଯୁକ୍ତ ହେବା ହିଁ ଶ୍ରେୟସ୍କର । କାରଣ ଭକ୍ତର ଆର୍ତ୍ତି ଶ୍ରୀଭଗବାନଙ୍କ ହୃଦୟକୁ ବିଗଳିତ କରାଇ ତାଙ୍କୁ ଭକ୍ତ ପ୍ରତି କୃପୋନ୍ମୁଖ କରାଏ । ଏହି ଆର୍ତ୍ତି ହ୍ଲାଦିନୀର ହିଁ ବୃତ୍ତି । ଏ ବିଷୟରେ ଶ୍ରୀଜୀବପାଦ ଉଲ୍ଲେଖ କରିଛନ୍ତି—"ଭକ୍ତିର୍ହି ଭକ୍ତକୋଟିପ୍ରବିଷ୍ଟ-ତଦାର୍ଦ୍ରୀଭାବୟିତୃତଚ୍ଛକ୍ତି-ବିଶେଷଃ । ଦୈନ୍ୟସମ୍ବନ୍ଧେନ ଚ ସାଧିକମୁଚ୍ଛଳିତା ଭବତୀତି ତତ୍ର ତଦାଧିକ୍ୟମ୍ ।" (ଶ୍ରୀଭ:ସ:୧୮୪ଅନୁ:)

ଅର୍ଥାତ୍ ଭକ୍ତବର୍ଗଙ୍କ ଚିତ୍ତରେ ପ୍ରବିଷ୍ଟ ଭଗବଚ୍ଛକ୍ତିବିଶେଷ ହିଁ ଭକ୍ତି–ଯାହା ଭକ୍ତର ଦୈନ୍ୟହେତୁ କୃପାଭାବଦ୍ୱାରା ଶ୍ରୀଭଗବାନଙ୍କ ଚିତ୍ତକୁ ବିଗଳିତ କରେ । ଦୈନ୍ୟସମ୍ବନ୍ଧବଶତଃ ଭକ୍ତି ଅତ୍ୟଧିକ ଉଚ୍ଛଳିତା ହୁଏ ବୋଲି ଦୈନ୍ୟଯୁକ୍ତ ଭକ୍ତଙ୍କ ମଧ୍ୟରେ ହିଁ ଭକ୍ତିର ଆଧିକ୍ୟ ଥାଏ, ଏହା ବୁଝିବାକୁ ହେବ ।

ଆର୍ତ୍ତି ହିଁ ଭଗବଦ୍‌ବଶୀକରଣର ସର୍ବଶ୍ରେଷ୍ଠ ଉପାୟ । ମହାଭାରତର ବାକ୍ୟ ଉଦ୍ଧାର କରି ଶ୍ରୀହରିଭକ୍ତିବିଳାସରେ ଏହିପରି ଉକ୍ତ ହୋଇଛି–

''ଋଣମେତତ୍ ପ୍ରବୃଦ୍ଧଂ ମେ ହୃଦୟାନ୍ନାପସର୍ପତି ।
ଯଦ୍‌ଗୋବିନ୍ଦେତି ଚୁକ୍ରୋଶ କୃଷ୍ଣା ମାଂ ଦୂରବାସିନମ୍ ।।'' (୧୧।୪୪୫)

ମୁଁ ବହୁଦୂରରେ ଥିବାବେଳେ ଦ୍ରୌପଦୀ ଦୂରଦେଶସ୍ଥିତ ମୋତେ ''ହେ ଗୋବିନ୍ଦ !'' କହି ଯେଉଁ ଆହ୍ୱାନ କରିଥିଲା, ତାହାଦ୍ୱାରା ମୋର ତା ପ୍ରତି ଋଣ ବହୁପରିମାଣରେ ବୃଦ୍ଧିପ୍ରାପ୍ତ ହୋଇଛି, ଏକଥା କୌଣସିମତେ ମୋ' ହୃଦୟରୁ ଦୂର ହେଉ ନାହିଁ । ଅର୍ଥାତ୍ ମୁଁ ସବୁବେଳେ ସେହି ଋଣ କଥା ଚିନ୍ତା କରୁଛି ।

ଏହି ଶ୍ଳୋକର ଟୀକାରେ ଶ୍ରୀଳ ସନାତନ ଗୋସ୍ୱାମୀ ଏହିପରି ଉଲ୍ଲେଖ କରିଛନ୍ତି– ''ଦୂରବାସିନଂ ଦୂରେ ବସନ୍ତମପି, ଅତଃ ସାକ୍ଷାଦିବ ସମ୍ବୋଧନଂ ନ ଘଟତେ । ତଥାପି ହେ ଗୋବିନ୍ଦେତି ଚୁକ୍ରୋଶ ଆକାରୟାମାସ; ଯଦେତଦ୍ ମମ ଋଣଂ ପ୍ରବୃଦ୍ଧଂ; ତସ୍ୟାଃ ପରମବଶ୍ୟୋଽସ୍ମୀତ୍ୟର୍ଥଃ, ପରମାର୍ତ୍ତ୍ୟା କୀର୍ତ୍ତନାତ୍ । ଅତଃ ହୃଦୟାନ୍ନାପସର୍ପତି ସଦା ତଦେବ ବିଚାରୟାମୀତ୍ୟର୍ଥଃ ।''

ଅର୍ଥାତ୍ ମୁଁ ବହୁ ଦୂରରେ ଥିଲି, ସେହି କାରଣରୁ ସାକ୍ଷାତ୍ ସମ୍ବୋଧନର ସୁଯୋଗ ନ ଥିଲା । ତଥାପି ସେ 'ହେ ଗୋବିନ୍ଦ !' ବୋଲି ଡାକିଥିଲା, ଏଣୁ ତାହା ପ୍ରତି ମୋର ଏହି ଋଣ ବୃଦ୍ଧି ହେଲା ଅର୍ଥାତ୍ ମୁଁ ତାହାର ପରମବଶ୍ୟ–ଏହି ଜ୍ଞାନ ହେଲା । ସେ ପରମ ଆର୍ତ୍ତିଯୁକ୍ତ ହୋଇ ମୋତେ ଡାକୁଥିବାରୁ ମୋ ହୃଦୟରୁ ତା ଚିନ୍ତା ଦୂର ହେଉ ନାହିଁ ।

ସେହି ହରିଭକ୍ତିବିଳାସ (୧୧।୪୪୭)ରେ ଆହୁରି ମଧ୍ୟ କୁହାଯାଇଛି–

''ଗୀତ୍ୱା ଚ ମମ ନାମାନି ରୁଦନ୍ତି ମମ ସନ୍ନିଧୌ ।
ତେଷାମହଂ ପରିକ୍ରୀତୋ ନାନ୍ୟକ୍ରୀତୋ ଜନାର୍ଦନଃ ।।''

ଅର୍ଥାତ୍ ଯେଉଁମାନେ ମୋର ନାମ ଗାନ କରି ମୋ ନିକଟରେ କ୍ରନ୍ଦନ କରନ୍ତି, ଜନାର୍ଦନ-ରୂପୀ ମୁଁ ସେମାନଙ୍କ ଦ୍ୱାରା ପରିକ୍ରୀତ ଅର୍ଥାତ୍ ସର୍ବତୋଭାବରେ ବଶୀଭୂତ ହୋଇଥାଏ, ଅନ୍ୟ କାହାରିଦ୍ୱାରା ହୁଏ ନାହିଁ ।

ଏହିସବୁ କାରଣରୁ ଭଗବାନଙ୍କର ଗୋଟିଏ ନାମ 'ଆର୍ତ୍ତବନ୍ଧୁ' । ଏଥିରୁ ସ୍ପଷ୍ଟ ସୂଚିତ ହେଲା ଯେ, ଆର୍ତ୍ତିଯୁକ୍ତ ପ୍ରାର୍ଥନା ହିଁ ଶ୍ରୀକୃଷ୍ଣଙ୍କର ହୃଦୟକୁ ବିଗଳିତ କରେ ଏବଂ

ସେତେବେଳେ ସେ କୃପା କରିବାକୁ ବ୍ୟଗ୍ର ହୋଇପଡ଼ନ୍ତି । କେବଳ ତାଙ୍କ କୃପାଲାଭ ପାଇଁ ଯେଉଁ ଆର୍ତ୍ତି, ଏହା ଜୀବର ସମ୍ପତ୍ତି ନୁହେଁ—ସେହି ହ୍ଲାଦିନୀ ଶକ୍ତିଙ୍କର ହିଁ କୃପାର ଫଳ ।

ନାମକୀର୍ତ୍ତନ ଅର୍ଥ ଆହ୍ୱାନ । ଭଗବାନଙ୍କୁ ଆହ୍ୱାନ କରାହେଉଛି ଭକ୍ତର ପ୍ରାର୍ଥନା ଶୁଣିବାକୁ । ଏହି ଆହ୍ୱାନ ସମୟରେ ଅନ୍ୟମନସ୍କ ହେବା କଅଣ କେବେ ସମ୍ଭବ ? ଏହି ଆହ୍ୱାନ କଥା ମହାମନ୍ତ୍ର ଜପକର୍ତ୍ତାମାନେ ବେଶ୍ ଉପଲବ୍ଧି କରିପାରୁଥିବେ । "ହରେ କୃଷ୍ଣ ! ହରେ ରାମ ! ହରେ ହରେ !"– ଏହି ସମ୍ବୋଧନାତ୍ମକ ନାମ ଯେ ହରିଙ୍କୁ ଆହ୍ୱାନ, କେବଳ ଆହ୍ୱାନ ନୁହେଁ—ଆର୍ତ୍ତିଯୁକ୍ତ ଆହ୍ୱାନ, ଏହା ନିଃସନ୍ଦେହ । ତେଣୁ ଏହି ଆହ୍ୱାନବେଳେ ଅନ୍ୟମନସ୍କ ହେବାର ପ୍ରଶ୍ନ ଉଠି ନ ପାରେ ।

ଏହି ଯେଉଁ ଆର୍ତ୍ତି କଥା ଏଠାରେ କୁହାଗଲା, ଏହା ହ୍ଲାଦିନୀଙ୍କ କୃପାରୁ ବାସ୍ତବରେ ତାଙ୍କ କୃପାଲାଭ ପାଇଁ ବ୍ୟାକୁଳ ସାଧକ ହୃଦୟରେ ହିଁ ଉଦିତ ହୋଇଥାଏ । ଅବଶ୍ୟ ଦାରିଦ୍ର୍ୟଦୁଃଖ ବା ବ୍ୟାଧିଜନିତ ଦୁଃଖରୁ ଉଦ୍ଧାରଲାଭ ପାଇଁ ଅନେକେ ଆର୍ତ୍ତିଯୁକ୍ତ ହୋଇ ପ୍ରାର୍ଥନା କରିଥାନ୍ତି । ଏ ପ୍ରାର୍ଥନା ସେମାନଙ୍କ ନିଜ ସୁଖ ପାଇଁ । ଭକ୍ତିସାଧକର ଯେଉଁ ପ୍ରାର୍ଥନା ତାହା କେବଳ ଶ୍ରୀଭଗବାନଙ୍କ ଅହୈତୁକୀ କୃପାଲାଭ ପାଇଁ ହିଁ ହୋଇଥାଏ ।

ଧ୍ରୁବ ଅଜ୍ଞ ବାଳକ ଥିଲେ । ସେ ମାଆଙ୍କ ଉପଦେଶରେ ପିତୃସିଂହାସନ ଲାଭ ଉଦ୍ଦେଶ୍ୟରେ ତୀବ୍ର ଆର୍ତ୍ତିଯୁକ୍ତ ହୋଇ ପ୍ରାର୍ଥନା କରିଥିଲେ । ତାଙ୍କ ଆର୍ତ୍ତି ଭଗବାନଙ୍କ ହୃଦୟକୁ ବିଗଳିତ କରିଦେଲା ସତ୍ୟ, ତଥାପି ସେ ତାଙ୍କ ନିକଟକୁ ଆସିଲେ ନାହିଁ । ତାହାର କାରଣ ତାଙ୍କ ହୃଦୟରେ ଭଗବାନଙ୍କ ପ୍ରତି ଐକାନ୍ତିକ ଭକ୍ତିଲାଭର ଉଦ୍ଦେଶ୍ୟ ନ ଥାଇ ପିତୃସିଂହାସନ-ରୂପକ ତୁଚ୍ଛ ବସ୍ତୁଲାଭର ଉଦ୍ଦେଶ୍ୟ ଥିଲା । କିନ୍ତୁ ତାଙ୍କ ଉପାସନାରେ ଦୁଇଟି ଗୁଣ ଥିଲା । ଗୋଟିଏ ହେଲା ତାଙ୍କର ସୁତୀବ୍ର ଆର୍ତ୍ତି ଓ ଅନ୍ୟଟି ହେଲା ତାଙ୍କ ବାଳସୁଲଭ ଅଜ୍ଞତା । ଏହି କାରଣରୁ ଭଗବାନ୍ ତାଙ୍କ ନିକଟକୁ ନିଜେ ନ ଆସି ନାରଦଙ୍କୁ ପ୍ରେରଣା ଦେଲେ । ସେ ଅଚାନକ ଆସି ତାଙ୍କ ନିକଟରେ ପହଞ୍ଚି ତାଙ୍କୁ "ଓଁ ନମୋ ଭଗବତେ ବାସୁଦେବାୟ" ଏହି ଦ୍ୱାଦଶାକ୍ଷର ମନ୍ତ୍ର ଜପ କରିବାକୁ କହି ଚାଲିଗଲେ । ନାରଦଙ୍କ କୃପାରୁ ସେ ଏହି ମନ୍ତ୍ର ଜପ କରୁ କରୁ ତାଙ୍କ ହୃଦୟରୁ ପିତୃ-ସିଂହାସନଲାଭର ବାସନା ସମ୍ପୂର୍ଣ୍ଣ ଦୂର ହୋଇ କେବଳ ଭଗବାନଙ୍କ ଅହୈତୁକୀ କୃପାଲାଭର ବାସନା ଜାଗ୍ରତ ହେଲା । ସେତେବେଳେ ଭଗବାନ୍ ତାଙ୍କ ନିକଟରେ ପହଞ୍ଚି ତାଙ୍କୁ ବର ମାଗିବାକୁ କହିଲେ । କିନ୍ତୁ ସେ ଆଉ କୌଣସି ବର ନ ମାଗି ତାଙ୍କ ଦର୍ଶନ ପାଇ ସେ କୃତାର୍ଥ ଓ ଆଉ କୌଣସି ବରରେ ତାଙ୍କର ଆବଶ୍ୟକତା ନାହିଁ ବୋଲି କହିଲେ କିନ୍ତୁ ଭଗବାନ୍ ତାଙ୍କ ଅନିଚ୍ଛାସତ୍ତ୍ୱେ ତାଙ୍କ ପୂର୍ବକଳ୍ପିତ ପିତୃସିଂହାସନଲାଭରୂପକ ବର ଅର୍ଥାତ୍ ବତିଶ ହଜାର ବର୍ଷ ରାଜ୍ୟଭୋଗର ବର ଦେବା ସଙ୍ଗେ ସଙ୍ଗେ ମୁକ୍ତି ମଧ୍ୟ ଦେଲେ । ଏଠାରେ ତାଙ୍କ ହୃଦୟରୁ ପିତୃସିଂହାସନଲାଭର ବାସନା ଦୂର ହୋଇ କେବଳ ଭଗବାନଙ୍କ ଅହୈତୁକୀ କୃପାଲାଭର ବାସନା ଜାଗିବାର ଏକମାତ୍ର କାରଣ ଶ୍ରୀନାରଦରୂପୀ ମହତ୍‌ଙ୍କ କୃପା ।

ସେହି ହେତୁରୁ ଶ୍ରୀଚୈତନ୍ୟ ମହାପ୍ରଭୁ କହିଲେ—''କୃଷ୍ଣଭକ୍ତି ଜନ୍ମମୂଳ ହୟ ସାଧୁସଙ୍ଗ । କୃଷ୍ଣପ୍ରେମଜନ୍ମେ ତେଁହୋ ପୁନଃ ମୁଖ୍ୟ ଅଙ୍ଗ'' (ଶ୍ରୀଚୈ:ଚ:୨।୨୨।୪୮)

ଅର୍ଥାତ୍ ଭକ୍ତମହତଙ୍କ ସଙ୍ଗ ଓ କୃପାରୁ ହିଁ କୃଷ୍ଣଭକ୍ତିବାସନା ଜୀବହୃଦୟରେ ଜାଗେ । ସେତେବେଳେ ଭକ୍ତ କୃଷ୍ଣଭକ୍ତି ଲାଭ ପାଇଁ ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ପ୍ରତି ମମତାଧିକ୍ୟ ଲାଭ ପାଇଁ ବ୍ୟାକୁଳ ହୋଇ ତାଙ୍କ ନାମ କୀର୍ତ୍ତନ କରେ ।

ଏହିପ୍ରକାର ନାମକୀର୍ତ୍ତନରେ ମନଃସଂଯୋଗ କିପରି ନିବିଡ଼ ହୋଇଥାଏ, ତାହା ପାଠକମାତ୍ରେ ଉପଲବ୍ଧି କରିପାରୁଥିବେ । ତେଣୁ ଅମନୋଯୋଗୀ ହୋଇ ହରିନାମକୀର୍ତ୍ତନ ଯେ ଶାସ୍ତ୍ର ଓ ମହାଜନାନୁମୋଦିତ ପନ୍ଥା ନୁହେଁ, ତାହା ସୁସ୍ପଷ୍ଟ ।

କୃଷ୍ଣ ଈଶ୍ୱରଭାବ ନେଇ ଅବତୀର୍ଣ୍ଣ ହୋଇଥିବାରୁ କେବଳ ବୈଧୀ ଭକ୍ତି କଥା ହିଁ ଶିକ୍ଷା ଦେଇଛନ୍ତି । ପ୍ରେମଭକ୍ତି କଥା ଶିକ୍ଷା ଦେଇ ନାହାନ୍ତି । ପରମକରୁଣାମୟ ସେହି ଶ୍ରୀକୃଷ୍ଣ ଏ ଜଗତରୁ ତାଙ୍କ ପ୍ରକଟଲୀଳା ସଂଗୋପନ କରିବା ପରେ ନିତ୍ୟ ଗୋଲୋକକୁ ଯାଇ କିପରି ଜଗତରେ ଆବିର୍ଭୂତ ହୋଇ ଜଗଦ୍‌ବାସୀଙ୍କୁ ବିନାସାଧନରେ ତାଙ୍କ ପ୍ରତି ପ୍ରେମ ଦେବେ, ସେହି ଚିନ୍ତା କରିଥିଲେ । ପୁଣି ତାଙ୍କ ପ୍ରୀତି ପାଇଁ ଶ୍ରୀରାଧାରାଣୀଙ୍କର ଯେଉଁ ଅଚିନ୍ତନୀୟ ସ୍ୱାର୍ଥତ୍ୟାଗ ସେହି ଚିନ୍ତା କରୁ କରୁ ତହିଁରେ ଏପରି ଅଭିଭୂତ ହୋଇଗଲେ ଯେ ସେ ନିଜକୁ ରାଧା ଜ୍ଞାନ କଲେ । ସେହି ରାଧାଭାବରେ ବିଭାବିତ ହୋଇ ଶ୍ରୀରାଧାଙ୍କ ଭାବ ଓ କାନ୍ତି ଧାରଣ କରି ସେ ଶ୍ରୀଗୌରହରିରୂପେ ଶ୍ରୀନବଦ୍ୱୀପଧାମରେ ଅବତୀର୍ଣ୍ଣ ହୋଇଥିଲେ । ସେ କହିଥିଲେ—''ନିରପରାଧେ ନାମ ଲୈଲେ ପାୟ ପ୍ରେମଧନ ।'' ଅର୍ଥାତ୍ ଅପରାଧଶୂନ୍ୟ ହୋଇ ନାମ ଗ୍ରହଣ କଲେ ଶ୍ରୀକୃଷ୍ଣପ୍ରେମ ଲାଭ ହୋଇପାରିବ । ପଦ୍ମପୁରାଣରେ ଏହି ନାମାପରାଧ କଥା କୁହାଯାଇଛି । ଏହା ଦଶପ୍ରକାର । ଏଥିରୁ ଅଷ୍ଟମ ନାମାପରାଧ ହେଲା, ''ଧର୍ମବ୍ରତତ୍ୟାଗହୁତାଦି ସର୍ବଶୁଭକ୍ରିୟାସାମ୍ୟମପି ପ୍ରମାଦଃ ।'' ଏହାର ଟୀକାରେ ଶ୍ରୀଳ ସନାତନପାଦ ଏହିପରି ଉଲ୍ଲେଖ କରିଛନ୍ତି—''ପ୍ରମାଦଃ-ନାମ୍ନ୍ୟନବଧାନତାପ୍ୟେକଃ, ଏବମତ୍ରାପରାଧଦ୍ୱୟମ୍ ।'' ଏଠାରେ ପ୍ରମାଦ ଅର୍ଥାତ୍ ଶୁଭକର୍ମ ସଙ୍ଗେ ହରିନାମକୁ ସମାନ ଜ୍ଞାନ କରିବା ଅପରାଧ ଓ ନାମରେ ଅନବଧାନତା ବା ଅମନୋଯୋଗିତା ମଧ୍ୟ ଆଉ ଗୋଟିଏ ଅପରାଧ । ଏହିପରି ଦୁଇଟି ଅପରାଧ କଥା କୁହାଯାଇଛି । ସୁତରାଂ ନାମକୀର୍ତ୍ତନରେ ଅମନୋଯୋଗିତା ଯେ ଗୋଟିଏ ଅପରାଧ, ଏହା ଶ୍ରୀଳ ସନାତନପାଦଙ୍କ ଉକ୍ତିରୁ ସ୍ପଷ୍ଟ ଜଣାଯାଏ ।

ଶ୍ରୀଗୌରହରିଙ୍କ ଶିକ୍ଷାନୁଯାୟୀ ଏହି ଅମନୋଯୋଗିତାରୂପକ ଅପରାଧ ତ୍ୟାଗ କରି ଆର୍ତ୍ତିଯୁକ୍ତ ହୋଇ ଶ୍ରୀହରିନାମ କୀର୍ତ୍ତନ ବା ଜପ କଲେ ପ୍ରେମଲାଭ ହୋଇପାରିବ ।

ପୁଣି ଶ୍ରୀହରିନାମକୀର୍ତ୍ତନପ୍ରଣାଳି ସମ୍ବନ୍ଧରେ ଶ୍ରୀଗୌରହରି ଶ୍ରୀଳ ସନାତନଗୋସ୍ୱାମୀଙ୍କୁ ଯାହା କହିଛନ୍ତି, ତାହା ଏହିପରି—

'ବାହ୍ୟ' 'ଅନ୍ତର' ଇହାର ଦୁଇ ତ ସାଧନ ।
ବାହ୍ୟ—ସାଧକଦେହେ କରେ ଶ୍ରବଣ-କୀର୍ତ୍ତନ ॥
ମନେ—ନିଜ ସିଦ୍ଧଦେହ କରିୟା ଭାବନ ।
ରାତ୍ରିଦିନେ କରେ ବ୍ରଜେ କୃଷ୍ଣେର ସେବନ ॥

(ଶ୍ରୀଚୈ:ଚ: ୨।୨୨।୮୯-୯୦)

ଅର୍ଥାତ୍ ନାମାଶ୍ରୟୀ ସାଧକ ବାହାରେ ସାଧକ ଦେହରେ ଶ୍ରବଣ-କୀର୍ତ୍ତନାଦି କରିବ । ମନରେ ଗୁରୁପ୍ରଦତ୍ତ ନିଜ ସିଦ୍ଧଦେହ କଥା ଚିନ୍ତା କରି ରାତ୍ରିଦିନ ଶ୍ରୀକୃଷ୍ଣଙ୍କ ସେବାଚିନ୍ତାରେ ମଗ୍ନ ରହିବ ।

ଏଠାରେ ମଧ ମନେ ମନେ ନିଜ ସିଦ୍ଧଦେହରେ ଶ୍ରୀକୃଷ୍ଣଙ୍କ ସେବା କଥା ଚିନ୍ତା କରି ବାହାରେ ଶ୍ରୀହରିନାମ କରିବା କଥା ମହାପ୍ରଭୁ ଶିକ୍ଷା ଦେଇଛନ୍ତି ।

ସୁତରାଂ ଶ୍ରୀହରିନାମ କୀର୍ତ୍ତନବେଳେ ଅମନୋଯୋଗିତାକୁ ପ୍ରଶ୍ରୟ ଦେବା ସୁବିଧାବାଦୀଙ୍କ ମତ । ଏହା ଶ୍ରୀଗୌରହରି ଓ ତଦନୁଗ ଗୋସ୍ୱାମୀମାନଙ୍କ ମତ ନୁହେଁ ଏବଂ ଏହା ଭକ୍ତିର ସହାୟକ ମଧ ନୁହେଁ ।

## ଶ୍ରୀଗୌରହରିଙ୍କର ସମସ୍ତଙ୍କୁ ଦର୍ଶନମାତ୍ରେ ପ୍ରେମଦାନ

ଶ୍ରୀଶ୍ରୀଗୌର-ନିତ୍ୟାନନ୍ଦଙ୍କ ଦର୍ଶନରେ ଲୋକେ କିପରି ପ୍ରେମ ଲାଭ କରିଥିଲେ ସେ ସମ୍ବନ୍ଧରେ କେତେକ ଉଦାହରଣ ଦେଉଛି ।

**ଶ୍ରୀତପନ ମିଶ୍ର—**ପୂର୍ବବଙ୍ଗକୁ ଯାଇଥିବା ସମୟରେ ଶ୍ରୀତପନ ମିଶ୍ରଙ୍କ ପ୍ରତି ଶ୍ରୀଗୌରହରିଙ୍କ କୃପା କଥା ଶ୍ରୀଚୈତନ୍ୟଭାଗବତରେ ଏହିପରି ବର୍ଣ୍ଣିତ ହୋଇଛି—

''ଏତ ବଲି' ପ୍ରଭୁ ତାରେ ଦିଲା ଆଲିଙ୍ଗନ ।
ପ୍ରେମେ ପୁଲକିତ ଅଙ୍ଗ ହଇଲ ବ୍ରାହ୍ମଣ ॥''

(ଶ୍ରୀଚୈ:ଭା: ଆଦି ୧୧।୧୫୨)

ଶ୍ରୀଗୌରହରି ଶ୍ରୀତପନ ମିଶ୍ରଙ୍କୁ ଆଲିଙ୍ଗନ କରିବାମାତ୍ରେ ଶ୍ରୀକୃଷ୍ଣପ୍ରେମରେ ତାଙ୍କ ଅଙ୍ଗ ପୁଲକିତ ହୋଇଥିଲା । ସେ ପ୍ରେମ ଲାଭ ପାଇଁ କୌଣସି ସାଧନ କରି ନାହାନ୍ତି । ତାଙ୍କର ଏହି ପ୍ରେମଲାଭ ଶ୍ରୀଗୌରହରିଙ୍କର ତାଙ୍କ ପ୍ରତି ବିଶେଷ କୃପାର ହିଁ ଫଳ ।

**ଶ୍ରୀବାସ ପଣ୍ଡିତଙ୍କ ଭାତୃସୁତା ନାରାୟଣୀ—**ଶ୍ରୀବାସ ପଣ୍ଡିତଙ୍କ ଭାତୃସୁତା (ଝିଆରୀ) ଚାରିବର୍ଷର ଅଜ୍ଞାନ ବାଳିକାକୁ ଶ୍ରୀଗୌରହରି ଯେପରି ପ୍ରେମ ଦାନ କରିଥିଲେ, ତାହା ଶ୍ରୀଳ ବୃନ୍ଦାବନ ଦାସ ଠାକୁର ଏହିପରି ବର୍ଣ୍ଣନା କରିଛନ୍ତି—

''ସମ୍ମୁଖେ ଦେଖେନ ଏକ ବାଲିକା ଆପନି ।
ଶ୍ରୀବାସେର ଭ୍ରାତୃସୁତା ନାମ 'ନାରାୟଣୀ' ॥

ଅଦ୍ୟାପିହ ବୈଷ୍ଣବସମାଜେ ଯା'ର ଧ୍ୱନି ।
'ଚୈତନ୍ୟେର ଅବଶେଷପାତ୍ର ନାରାୟଣୀ' ॥
ସର୍ବଭୂତ-ଅନ୍ତର୍ଯାମୀ ପ୍ରଭୁ ଗୌରଚାନ୍ଦ ।
ଆଜ୍ଞା କୈଲା ''ନାରାୟଣୀ ! କୃଷ୍ଣ ବଲି' କାନ୍ଦ ॥''
ଚାରି ବସରେର ସେଇ ଉନ୍ମତ୍ତ ଚରିତ ।
'ହା କୃଷ୍ଣ !' ବଲିୟା କାନ୍ଦେ ନାହିକ ସମ୍ବିତ ॥''

(ଶ୍ରୀଚୈ:ଭା:ମଧ୍ୟ ୨।୩୨୧-୨୪)

**ଜଗାଇ-ମାଧାଇ**—ଜଗାଇ ଓ ମାଧାଇଙ୍କ ଉଦ୍ଧାର ପରେ ସେମାନଙ୍କର ଯେଉଁ ଅବସ୍ଥା ହୋଇଥିଲା, ଶ୍ରୀଚୈତନ୍ୟଭାଗବତରେ ତାହା ବର୍ଣ୍ଣିତ ହୋଇଛି—

''ଲୋମହର୍ଷ, ମହା ଅଶ୍ରୁ, କମ୍ପ ସର୍ବ ଗାୟ ।
ଜଗାଇ-ମାଧାଇ ଦୁଇ ଗଡ଼ାଗଡ଼ି ଯାୟ ॥
କା'ର ଶକ୍ତି ବୁଝିତେ ଚୈତନ୍ୟ-ଅଭିମତ ।
ଦୁଇଦସ୍ୟୁ କରେ ଦୁଇ ମହାଭାଗବତ ॥''

(ଶ୍ରୀଚୈ:ଭା:ମଧ୍ୟ ୧୨।୨୪୩-୪୪)

**ଶ୍ରୀଳ ରାୟ ରାମାନନ୍ଦଙ୍କ ସହଯାତ୍ରୀ ସ୍ନାନାର୍ଥୀ ବ୍ରାହ୍ମଣଗଣ**—ଶ୍ରୀଗୌରହରି ଯେତେବେଳେ ଦକ୍ଷିଣଭାରତ ଭ୍ରମଣରେ ଯାଇଥିଲେ, ସେତେବେଳେ ଶ୍ରୀଗୋଦାବରୀ-ନଦୀତୀରରେ ଶ୍ରୀଳ ରାମାନନ୍ଦ ରାୟଙ୍କ ସଙ୍ଗରେ ତାଙ୍କର ସାକ୍ଷାତ୍ ହୋଇଥିଲା । ଶ୍ରୀରାମାନନ୍ଦ ରାୟ ବହୁ ବୈଦିକ ବ୍ରାହ୍ମଣଙ୍କୁ ସଙ୍ଗରେ ଆଣି ଶ୍ରୀଗୋଦାବରୀସ୍ନାନ କରିବାକୁ ଆସିଥିଲେ । ସ୍ନାନାନ୍ତେ ସେ ଜଣେ ସନ୍ନ୍ୟାସୀଙ୍କୁ (ଶ୍ରୀଗୌରହରିଙ୍କୁ) ଦେଖି ତାଙ୍କ ସଙ୍ଗେ ସାକ୍ଷାତ୍ କରିବାକୁ ଆସିଲେ । ଦୁହେଁ ଦୁହିଙ୍କୁ ଆଲିଙ୍ଗନ କରି ପ୍ରେମାବିଷ୍ଟ ହୋଇଥିଲେ । ଏହା ଦେଖି ବ୍ରାହ୍ମଣମାନେ ଚମତ୍କୃତ ହୋଇଯାଇଥିଲେ । ସେମାନଙ୍କର ଯେପରି ଅବସ୍ଥା ହୋଇଥିଲା, ତାହା ଶ୍ରୀଳ ରାମାନନ୍ଦ ରାୟ ଶ୍ରୀଗୌରସୁନ୍ଦରଙ୍କୁ କହୁଛନ୍ତି—

''ଆମାର ସଙ୍ଗେ ବ୍ରାହ୍ମଣାଦି ସହସ୍ରେକ ଜନ ।
ତୋମାର ଦର୍ଶନେ ସବାର ଦ୍ରବୀଭୂତ ମନ ॥
'କୃଷ୍ଣ କୃଷ୍ଣ' ନାମ ଶୁନି ସଭାର ବଦନେ ।
ସଭାର ଅଙ୍ଗ ପୁଲକିତ ଅଶ୍ରୁ ନୟନେ ॥''

(ଶ୍ରୀଚୈ:ଚ:ମଧ୍ୟ ୮।୩୮-୩୯)

**ଅମୋଘ**—ଦିନେ ଶ୍ରୀଳ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ଶ୍ରୀଗୌରହରିଙ୍କୁ ତାଙ୍କ ଘରେ ଭୋଜନ କରିବାକୁ ନିମନ୍ତ୍ରଣ କରିଥିଲେ । ସେ ଭୋଜନ କରିବା ସମୟରେ ଶ୍ରୀସାର୍ବଭୌମଙ୍କ ଜୋଇଁ ଅମୋଘ ଆସି କହିଲା—''ସନ୍ନ୍ୟାସୀ ଏତେ ଖାଉଛନ୍ତି !'' ଏହି ନିନ୍ଦାରୂପକ ଅପରାଧ

ଫଳରେ ସେ ବିସୂଚିକା ବ୍ୟାଧିରେ ପୀଡ଼ିତ ହୋଇ ପ୍ରାଣତ୍ୟାଗ କରିବାକୁ ଯାଉଥିଲା । ଶ୍ରୀଗୌରହରି ଏହା ଶୁଣିବାମାତ୍ରେ ତତ୍‌କ୍ଷଣାତ୍ ଅମୋଘ ନିକଟକୁ ଯାଇ ସ୍ନେହରେ ତା' ଛାତିରେ ହାତ ଦେଇ କହିଲେ–"ଅମୋଘ ! ତୁମେ ବ୍ରାହ୍ମଣ ଓ ତୁମ ହୃଦୟ ଶ୍ରୀକୃଷ୍ଣଙ୍କ ବସତିସ୍ଥଳ । ଏହିପରି ପବିତ୍ର ହୃଦୟରେ ତୁମେ ମାତ୍ସର୍ଯ୍ୟରୂପକ ଚଣ୍ଡାଳକୁ କାହିଁକି ବସାଇଲ ? ଯାହାହେଉ ସାର୍ବଭୌମଙ୍କ ସମ୍ବନ୍ଧହେତୁ ତୁମର ଅପରାଧ ଦୂର ହେଲା । ତୁମେ ବର୍ତ୍ତମାନ କୃଷ୍ଣନାମ କର । ଅଚିରେ ଶ୍ରୀକୃଷ୍ଣ ତୁମକୁ କୃପା କରିବେ । ତାପରେ ଅମୋଘର ଯାହା ଅବସ୍ଥା ହୋଇଥିଲା ତାହା ଶ୍ରୀଚୈତନ୍ୟଚରିତାମୃତରେ ଏହିପରି ବର୍ଣ୍ଣିତ ହୋଇଛି–

"ଶୁନି 'କୃଷ୍ଣ କୃଷ୍ଣ' କହି ଅମୋଘ ଉଠିଲା ।
ପ୍ରେମୋନ୍ମାଦେ ମତ୍ତ ହୟା ନାଚିତେ ଲାଗିଲା ॥
କମ୍ପାଶ୍ରୁ ପୁଲକ ସ୍ୱେଦ ସ୍ତମ୍ଭ ସ୍ୱରଭଙ୍ଗ ।
ପ୍ରଭୁ ହାସେ ଦେଖି ତାର ପ୍ରେମେର ତରଙ୍ଗ ॥"

(ଶ୍ରୀଚୈ:ଚ:ମଧ୍ୟ ୧୫।୨୭୨-୭୩)

**ଝାଡ଼ଖଣ୍ଡର ବନ୍ୟ ପଶୁ ପ୍ରଭୃତି**–ଶ୍ରୀମନ୍ମହାପ୍ରଭୁ ଶ୍ରୀବଳଭଦ୍ର ଭଟ୍ଟାଚାର୍ଯ୍ୟଙ୍କୁ ସଙ୍ଗରେ ନେଇ ଶ୍ରୀବୃନ୍ଦାବନ ଯିବାବେଳେ ବାଟରେ ଝାଡ଼ଖଣ୍ଡ ଜଙ୍ଗଲରେ ଯେଉଁ ଅଲୌକିକ ଲୀଳା କରିଥିଲେ, ତାହା ଶୁଣିଲେ ଆଶ୍ଚର୍ଯ୍ୟ ନ ହୋଇ ରହି ପାରିବ ନାହିଁ । ସେହି ଲୀଳାକଥା କହୁଛି ଶୁଣ ।

"ଏକଦିନ ପଥେ ବ୍ୟାଘ୍ର କରିୟାଛେ ଶୟନ ।
ଆବେଶେ ତାର ଗାୟେ ପ୍ରଭୁର ଲାଗିଲ ଚରଣ ॥
ପ୍ରଭୁ କହେ–'କୃଷ୍ଣ କୃଷ୍ଣ' ବ୍ୟାଘ୍ର ଉଠିଲ ।
'କୃଷ୍ଣ କୃଷ୍ଣ' କହି ବ୍ୟାଘ୍ର ନାଚିତେ ଲାଗିଲ ॥
ଆରଦିନେ ମହାପ୍ରଭୁ କରେ ନଦୀସ୍ନାନ ।
ମତ୍ତହସ୍ତୀୟୁଥ ଆଇଲ କରିତେ ଜଲପାନ ॥
ପ୍ରଭୁ ଜଲକୃତ୍ୟ କରେ, ଆଗେ ହସ୍ତୀ ଆଇଲା ।
'କୃଷ୍ଣ କହ' ବଲି ପ୍ରଭୁ ଜଲ ଫେଲି ମାଇଲା ॥
ସେଇ ଜଲବିନ୍ଦୁକଣା ଲାଗେ ଯାର ଗାୟ ।
ସେଇ 'କୃଷ୍ଣ କୃଷ୍ଣ' କହେ ପ୍ରେମେ ନାଚେ ଗାୟ ॥
କେହୋ ଭୂମେ ପଡ଼େ କେହୋ କରୟେ ଚିତ୍କାର ।
ଦେଖି ଭଟ୍ଟାଚାର୍ଯ୍ୟେର ମନେ ହୟ ଚମତ୍କାର ॥

ପଥେ ଯାଇତେ କରେ ପ୍ରଭୁ ଉଚ୍ଚ ସଂକୀର୍ତ୍ତନ ।
ମଧୁର କଣ୍ଠଧ୍ୱନି ଶୁନି ଆଇସେ ମୃଗୀଗଣ ॥
ଡାହିନେ-ବାମେ ଧ୍ୱନି ଶୁନି ଯାୟ ପ୍ରଭୁ-ସଙ୍ଗେ ।
ପ୍ରଭୁ ତାର ଅଙ୍ଗ ମୁଛେ, ଶ୍ଳୋକ ପଢ଼େ ରଙ୍ଗେ ॥
ହେନକାଲେ ବ୍ୟାଘ୍ର ତଥା ଆଇଲ ପାଁଚ-ସାତ ।
ବ୍ୟାଘ୍ର ମୃଗୀ ମିଲି ଚଲେ ମହାପ୍ରଭୁର ସାଥ ॥
ଦେଖି ମହାପ୍ରଭୁର ବୃନ୍ଦାବନ-ସ୍ମୃତି ହୈଲ ।
ବୃନ୍ଦାବନଗୁଣବର୍ଣ୍ଣନ-ଶ୍ଳୋକ ପଢ଼ିଲ ॥
'କୃଷ୍ଣ କୃଷ୍ଣ କହ' କରି ପ୍ରଭୁ ଯବେ ବୈଲ ।
'କୃଷ୍ଣ' କହି ବ୍ୟାଘ୍ର-ମୃଗ ନାଚିତେ ଲାଗିଲ ॥
ବ୍ୟାଘ୍ର-ମୃଗ ଅନ୍ୟୋନ୍ୟେ କରେ ଆଲିଙ୍ଗନ ।
ମୁଖେ ମୁଖ ଦିୟା କରେ ଅନ୍ୟୋନ୍ୟେ ଚୁମ୍ବନ ॥''

(ଶ୍ରୀଚୈ:ଚ:ମଧ ୧୭।୨୭-୩୯)

ଶ୍ରୀମନ୍ମହାପ୍ରଭୁଙ୍କ ଦର୍ଶନରେ ହସ୍ତୀ, ମୃଗ ଓ ବ୍ୟାଘ୍ର ଇତ୍ୟାଦିଙ୍କର କିପରି ପ୍ରେମୋଦୟ ହୋଇଥିଲା, ଏହା ତାହାର ପ୍ରମାଣ ।

**ଦାକ୍ଷିଣାତ୍ୟବାସୀ**—ଶ୍ରୀଗୌରହରି ଦକ୍ଷିଣ ଭାରତ ଯାଇଥିବାବେଳେ ତାଙ୍କ ଦର୍ଶନରେ ଯେଉଁ ବ୍ୟକ୍ତି ପ୍ରେମ ଲାଭ କରୁଥିଲା, ତାକୁ ଯେ ଦେଖୁଥିଲା ସେ ମଧ ପ୍ରେମରେ ମତ୍ତ ହେଉଥିଲା । ଏସମ୍ବନ୍ଧରେ ଶ୍ରୀଚୈତନ୍ୟଚରିତାମୃତର ବର୍ଣ୍ଣନା କହୁଛି—

''ଲୋକ ଦେଖି ପଥେ କହେ ବୋଲ 'ହରି ହରି' ॥
ସେଇ ଲୋକ ପ୍ରେମେ ମତ୍ତ ବୋଲେ 'ହରି କୃଷ୍ଣ' ।
ପ୍ରଭୁର ପାଛେ ସଙ୍ଗେ ଯାୟ—ଦର୍ଶନେ ସତୃଷ୍ଣ ॥
କଥୋଦୂର ରହି ପ୍ରଭୁ ତାରେ ଆଲିଙ୍ଗିୟା ।
ବିଦାୟ କରେନ ତାରେ ଶକ୍ତି ସଞ୍ଚାରିୟା ॥
ସେଇ ଜନ ନିଜଗ୍ରାମେ କରିୟା ଗମନ ।
'କୃଷ୍ଣ' ବୋଲେ ହାସେ କାନ୍ଦେ ନାଚେ ଅନୁକ୍ଷଣ ॥
ଯାରେ ଦେଖେ ତାରେ କହେ କହ କୃଷ୍ଣ ନାମ ।
ଏଇମତ ବୈଷ୍ଣବ ହୈଲ ସବ ନିଜଗ୍ରାମ ॥
ଗ୍ରାମାନ୍ତର ହୈତେ ଦୈବେ ଆଇସେ ଯତ ଜନ ।
ତାଁହାର ଦର୍ଶନ କୃପାୟ ହୟ ତାଁର ସମ ॥

ସେଇ ଯାଇ ନିଜଗ୍ରାମ ବୈଷ୍ଣବ କରୟ ।
ଅନ୍ୟଗ୍ରାମୀ ଆସି ତାଁରେ ଦେଖି ବୈଷ୍ଣବ ହୟ ।।
ସେଇ ଯାଇ ଆର ଗ୍ରାମେ କରେ ଉପଦେଶ ।
ଏଇମତ ବୈଷ୍ଣବ ହୈଲ ସବ ଦକ୍ଷିଣଦେଶ ।।''

(ଶ୍ରୀଚୈ:ଚ:ମଧ୍ୟ ୭।୯୪-୧୦୧)

**ଶ୍ରୀପ୍ରତାପରୁଦ୍ରଙ୍କ ମହିଷୀବୃନ୍ଦ**—ବୃନ୍ଦାବନଗମନ ଛଳରେ ଯେତେବେଳେ ଶ୍ରୀଗୌରହରି ଶ୍ରୀଗୌଡ଼ଦେଶ ଯାତ୍ରା କରିଥିଲେ, ସେତେବେଳେ ଚିତ୍ରୋତ୍ପଳାନଦୀକୁ (ମହାନଦୀର ପୁରାତନ ନାମ) ସ୍ନାନ କରିବାକୁ ଯିବା ସମୟରେ ଶ୍ରୀପ୍ରତାପରୁଦ୍ରଙ୍କ ମହିଷୀମାନେ ହାତୀପିଠିରେ ହୋଇଥିବା ତମ୍ବୁଗୃହରେ ବସି ଦୂରରୁ ତାଙ୍କ ଦର୍ଶନ କରି ପ୍ରଣାମ କରିଥିଲେ । ସେ ସମୟରେ ସେମାନଙ୍କର ଯେଉଁ ଅବସ୍ଥା ହୋଇଥିଲା, ଶ୍ରୀଳ କୃଷ୍ଣଦାସ କବିରାଜ ଗୋସ୍ୱାମୀ ତାହା ଏହିପରି ବର୍ଣ୍ଣନା କରିଛନ୍ତି—

''ଚିତ୍ରୋତ୍ପଳା ନଦୀ ଆସି ଘାଟେ କୈଲ ସ୍ନାନ ।
ମହିଷୀସକଲ ଦେଖି କରୟେ ପ୍ରଣାମ ।।
ପ୍ରଭୁର ଦର୍ଶନେ ସଭେ ହୈଲା ପ୍ରେମମୟ ।
'କୃଷ୍ଣ କୃଷ୍ଣ' କହେ, ନେତ୍ରେ ଅଶ୍ରୁ ବରିଷୟ ।।
ଏମନ ଦୟାଲୁ ନାହି ଶୁନି ତ୍ରିଭୁବନେ ।
କୃଷ୍ଣପ୍ରେମା ହୟ ଯାର ଦୂରଦରଶନେ ।।''

(ଶ୍ରୀଚୈ:ଚ:ମଧ୍ୟ ୧୬।୧୧୮-୨୦)

**ମଦ୍ୟପ ଯବନରାଜା**—ନବଦ୍ୱୀପ ଯିବା ଉଦ୍ଦେଶ୍ୟରେ ଶ୍ରୀଗୌରହରି ଓଡ଼ିଶା ଓ ବଙ୍ଗଳା ସୀମାରେ ପହଞ୍ଚିଲା ପରେ ସେଠାକାର ଅଧିକାରୀ ଶ୍ରୀଗୌରହରିଙ୍କୁ ଓଡ଼ିଶା ପରେ ମଦ୍ୟପ ଓ ଅତ୍ୟାଚାରୀ ମୁସଲମାନ ରାଜାର ରାଜ୍ୟ ପାର ହୋଇ ଯିବାକୁ ପଡ଼ିବ ବୋଲି କହିଲେ । ତାର ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ ତା ସଙ୍ଗରେ ସନ୍ଧି କରିବାର ପ୍ରସ୍ତାବ ଦେଲେ ଏବଂ ସନ୍ଧି ହୋଇଗଲେ ଶ୍ରୀଗୌରହରି ସ୍ୱଚ୍ଛନ୍ଦରେ ଯାଇ ପାରିବେ ବୋଲି ମତ ବ୍ୟକ୍ତ କଲେ । ଏହି ସମୟରେ ଉକ୍ତ ଯବନରାଜାଙ୍କର ଜଣେ ହିନ୍ଦୁ ଗୁପ୍ତଚର ସୀମା ପାର ହୋଇ ଓଡ଼ିଶା ଭିତରକୁ ଆସିଲା । ଶ୍ରୀଗୌରହରିଙ୍କ ଅଦ୍ଭୁତ ଚରିତ୍ର ଦେଖି ସେହି ଚର ଯାଇ ଯବନରାଜାଙ୍କୁ କହିଲା— ''ଶ୍ରୀଜଗନ୍ନାଥ ଧାମ ପୁରୀରୁ ଜଣେ ସନ୍ନ୍ୟାସୀ ଆସିଛନ୍ତି । ତାଙ୍କ ସଙ୍ଗରେ ଅନେକ ସିଦ୍ଧପୁରୁଷ ଅଛନ୍ତି । ସବୁବେଳେ ସମସ୍ତେ ଶ୍ରୀକୃଷ୍ଣ ସଂକୀର୍ତ୍ତନ କରୁଛନ୍ତି । କୀର୍ତ୍ତନ କଲାବେଳେ ତାଙ୍କ ଭିତରେ କିଏ ହସୁଛି ତ କିଏ କାନ୍ଦୁଛି ଓ କିଏ ନାଚୁଛି । ଲକ୍ଷ ଲକ୍ଷ ଲୋକ ସେମାନଙ୍କୁ ଦେଖିବାକୁ ଆସୁଛନ୍ତି । ଯେ ଥରେ ସେମାନଙ୍କୁ ଦେଖୁଛି, ସେ ଆଉ ଘରକୁ ଫେରିବାକୁ ଇଚ୍ଛା କରୁ ନାହିଁ ଏବଂ ସେହିସବୁ ଲୋକ କୃଷ୍ଣ କୀର୍ତ୍ତନ କରି ପାଗଳ ପରି ନାଚୁଛନ୍ତି, ଗାଉଛନ୍ତି,

କାନ୍ଦୁଛନ୍ତି ଓ ଭୂଇଁରେ ଗଡୁଛନ୍ତି । ସେଠାକାର ଅବସ୍ଥା ଭାଷାରେ କହି ହେବ ନାହିଁ, କେବଳ ଦେଖିଲେ ଜାଣି ହେବ । ସେହି ସନ୍ୟାସୀଙ୍କର ଏହିସବୁ ଲକ୍ଷଣ ଦେଖି ଲୋକେ ତାଙ୍କୁ ସାକ୍ଷାତ୍ ଈଶ୍ୱର ବୋଲି କହୁଛନ୍ତି ।'' ଏତିକି କହି ସେ ଚର ମଧ୍ୟ 'ହରି କୃଷ୍ଣ' କହି କେତେବେଳେ ହସିଲା, କେତେବେଳେ କାନ୍ଦିଲା ଓ କେତେବେଳେ ପାଗଳ ପରି ନାଚିଲା । ଚରଠାରୁ ଏହି ସମସ୍ତ ବୃତ୍ତାନ୍ତ ଶୁଣି ଓ ତାର ଆଚରଣ ଦେଖି ଯବନରାଜ ବିସ୍ମିତ ହୋଇଗଲେ । ସେ ସଙ୍ଗେ ସଙ୍ଗେ ତାଙ୍କର ଜଣେ ବିଶ୍ୱସ୍ତ କର୍ମଚାରୀକୁ ଶ୍ରୀଗୌରହରିଙ୍କ ନିକଟକୁ ପଠାଇଲେ । ଉକ୍ତ କର୍ମଚାରୀ ଯାଇ ଶ୍ରୀଗୌରହରିଙ୍କୁ ପ୍ରଣାମ କରିବା ମାତ୍ରେ 'କୃଷ୍ଣ କୃଷ୍ଣ' କହି ପ୍ରେମରେ ବିହ୍ୱଳ ହୋଇଗଲା । କିଛି ସମୟ ପରେ ଧୈର୍ଯ୍ୟ ଧରି ଓଡ଼ିଶାର ରାଜ ଅଧିକାରୀଙ୍କୁ କହିଲା– ''ଯବନରାଜା ଆପଣଙ୍କ ନିକଟକୁ ମୋତେ ପଠାଇଛନ୍ତି । ଆପଣ ଯଦି ଆଜ୍ଞା ଦିଅନ୍ତି, ତେବେ ସେ ଆସି ଶ୍ରୀଗୌରହରିଙ୍କ ଦର୍ଶନ କରି ଯିବେ । ସେ ବହୁତ ଉତ୍କଣ୍ଠିତ ହୋଇ ବିନୟସହକାରେ ମୋ ହାତରେ ଏ ଖବର ଦେଇଛନ୍ତି । ଏହା ହିଁ ଆପଣଙ୍କ ସଙ୍ଗରେ ସନ୍ଧି । ତେଣୁ ଆଉ ଯୁଦ୍ଧଭୟର କୌଣସି କାରଣ ନାହିଁ ।'' ଯବନରାଜାଙ୍କ କର୍ମଚାରୀଠାରୁ ଏହିସବୁ କଥା ଶୁଣି ମହାପାତ୍ର (ଓଡ଼ିଶାର ରାଜକର୍ମଚାରୀ) ବିସ୍ମିତ ହୋଇଗଲେ । ସେ ମନେ ମନେ ଶ୍ରୀଗୌରହରିଙ୍କ ଅସୀମ କରୁଣା କଥା ଚିନ୍ତା କରୁ କରୁ ଭାବିଲେ ଯେ, ଯେଉଁ ଶ୍ରୀଗୌରହରିଙ୍କ ଦର୍ଶନ ଓ ନାମଶ୍ରବଣରେ ଜଗଦ୍‌ବାସୀ ଉଦ୍ଧାର ଲାଭ କଲେ, ସେହି ଶ୍ରୀଗୌରହରିଙ୍କ ଅହୈତୁକୀ କୃପାରୁ ହିଁ ଯବନରାଜାଙ୍କ ମନର ଏପରି ଅଦ୍ଭୁତ ପରିବର୍ତ୍ତନ ହୋଇଛି । ଏହି କଥା ଚିନ୍ତା କରି ସେ ଯବନରାଜାଙ୍କ କର୍ମଚାରୀକୁ କହିଲେ–''ଯବନରାଜା ଯେ ଶ୍ରୀଗୌରହରିଙ୍କ ଦର୍ଶନ କରିବାକୁ ଆଗ୍ରହୀ ଏହା ତାଙ୍କର ମହାଭାଗ୍ୟ । ସେ ନିରସ୍ତ୍ର ହୋଇ କେବଳ ପାଞ୍ଚ ସାତ ଜଣ ଭୃତ୍ୟ ସଙ୍ଗରେ ଆଣି ଶ୍ରୀଗୌରହରିଙ୍କ ଦର୍ଶନ କରିବାକୁ ଆସନ୍ତୁ ।'' ଉକ୍ତ କର୍ମଚାରୀ ଫେରି ଯାଇ ଯବନରାଜାଙ୍କୁ ସବୁକଥା କହିଲା । ସେ ହିନ୍ଦୁବେଶ ଧରି ଶ୍ରୀଗୌରହରିଙ୍କୁ ଦର୍ଶନ କରିବାକୁ ଆସିଲେ । ଶ୍ରୀଗୌରହରିଙ୍କୁ ଦୂରରୁ ଦେଖି ସେ ସାଶ୍ରୁନୟନ ଓ ପୁଲକିତ ଅଙ୍ଗରେ ଦଣ୍ଡବତ୍ ପ୍ରଣାମ କଲେ । ମହାପାତ୍ର ସମ୍ମାନସହକାରେ ତାଙ୍କୁ ଶ୍ରୀଗୌରହରିଙ୍କ ନିକଟକୁ ଆଣିଲେ । ସେ ହାତ ଯୋଡ଼ି କରି ଶ୍ରୀଗୌରହରିଙ୍କ ସମ୍ମୁଖରେ କୃଷ୍ଣନାମ କୀର୍ତ୍ତନ କରିବାକୁ ଲାଗିଲେ । ତାପରେ ସେ ଅନୁତାପଗ୍ରସ୍ତ ହୋଇ କହିଲେ–''ଅଧମ ଯବନକୁଳରେ ମୋର କାହିଁକି ଜନ୍ମ ହେଲା ? ବିଧାତା ମୋତେ ହିନ୍ଦୁକୁଳରେ କାହିଁକି ନ ଜନ୍ମାଇଲେ? ହିନ୍ଦୁ ହୋଇଥିଲେ ତୁମ ପାଦପଦ୍ମରେ ସ୍ଥାନ ପାଇଥାନ୍ତି । ଏ ଦେହ ମୋର ବୃଥା । ଏ ପ୍ରାଣ ରହିବା ଅପେକ୍ଷା ଚାଲିଯିବା ଭଲ ।'' ଯବନରାଜାଙ୍କର ଏହି ଖେଦୋକ୍ତି ଶୁଣି ମହାପାତ୍ର ଆବିଷ୍ଟ ହୋଇ ଶ୍ରୀଗୌରହରିଙ୍କ ଚରଣଧାରଣପୂର୍ବକ ଏହିପରି ସ୍ତୁତି କରିବାକୁ ଲାଗିଲେ–''ହେ ପ୍ରଭୋ ! ଯାହାର ନାମ ଶ୍ରବଣରେ ଚଣ୍ଡାଳ ପବିତ୍ର ହୋଇଯାଏ, ଏ ଯବନରାଜ ସେହି ତୁମର ଦର୍ଶନ ପାଇ ଧନ୍ୟ ହେଲେ । ଅଶ୍ରୁପୁଲକାଦି ଏହାଙ୍କର ଯେଉଁ ଲକ୍ଷଣ ଦେଖାଯାଉଛି ଏହା ତୁମ ଦର୍ଶନର ହିଁ ଅଦ୍ଭୁତ ଫଳ ।'' ତାପରେ

ଶ୍ରୀଗୌରହରି ଉକ୍ତ ଯବନରାଜାଙ୍କୁ ଆଶ୍ୱାସନା ଦେଇ କୃପାପୂର୍ବକ ତାଙ୍କୁ 'ଶ୍ରୀକୃଷ୍ଣ-ହରି' କୀର୍ତ୍ତନ କରିବାକୁ ଆଦେଶ ଦେଲେ । ସେତେବେଳେ ଯବନରାଜ କହିଲେ—''ଯଦି ମୋତେ କୃପା କଲେ ତେବେ ମୋତେ କିଛି ସେବା ଦେଇ ଧନ୍ୟ କରନ୍ତୁ । ମୁଁ ବହୁତ ଗୋ-ବ୍ରାହ୍ମଣ ଓ ବୈଷ୍ଣବଙ୍କ ହିଂସା କରିଛି । ସେହି ପାପରୁ ମୋତେ ଉଦ୍ଧାର କରନ୍ତୁ ।'' ଏହା ଶୁଣି ଶ୍ରୀମୁକୁନ୍ଦ ଦତ୍ତ କହିଲେ ଯେ, ଗଙ୍ଗାଦର୍ଶନ କରିବାକୁ ଯିବା ଶ୍ରୀଗୌରହରିଙ୍କ ଇଚ୍ଛା । ସେ କିପରି ନିରାପଦରେ ଯାଇ ପାରିବେ, ସେହି ବ୍ୟବସ୍ଥା କରନ୍ତୁ । ଏହା ହିଁ ଆପଣଙ୍କର ବଡ଼ ସେବା । ତାପରେ ସେହି ଯବନରାଜା ଶ୍ରୀଗୌରହରିଙ୍କ ପାଦପଦ୍ମ ବନ୍ଦନା କରି ଫେରିଯିବାକୁ ଉଦ୍ୟତ ହେଲେ । ମହାପାତ୍ର ତାଙ୍କୁ ପ୍ରେମରେ ଆଲିଙ୍ଗନ କଲେ ଏବଂ ବହୁତ ଦ୍ରବ୍ୟ ଭେଟି ଦେଇ ତାଙ୍କ ସଙ୍ଗରେ ମିତ୍ରତା ସ୍ଥାପନ କଲେ । ପରଦିନ ସକାଳେ ସେ ବହୁତ ନୌକା ସଜାଇ ଶ୍ରୀଗୌରହରିଙ୍କୁ ଆଣିବା ପାଇଁ ତାଙ୍କର ଜଣେ ବିଶ୍ୱସ୍ତ କର୍ମଚାରୀଙ୍କୁ ପଠାଇଲେ । ମହାପାତ୍ର ଶ୍ରୀଗୌରହରିଙ୍କୁ ନୌକାରେ ବିଜୟ କରିବାକୁ ପ୍ରାର୍ଥନା କଲେ । ଯବନ କର୍ମଚାରୀ ଆସି ଶ୍ରୀଗୌରହରିଙ୍କ ପଦ ବନ୍ଦନା କଲା । ଗୋଟିଏ ନୂଆ ନୌକା ଓ ତା ଭିତରେ ଘର ହୋଇଥିଲା । ସେହି ନୌକାରେ ଶ୍ରୀଗୌରହରି ନିଜ ଗଣ ସହିତ ବିଜେ କଲେ ଓ ମହାପାତ୍ରଙ୍କୁ ବିଦାୟ ଦେଲେ । ମହାପାତ୍ର କାନ୍ଦି କାନ୍ଦି କୂଳରେ ରହିଗଲେ । ଉକ୍ତ ଯବନ ଜଳଦସ୍ୟୁ ଭୟରେ ଦଶଟି ନୌକାରେ ସୈନ୍ୟ ସଙ୍ଗରେ ନେଇଥିଲା । ପିଚ୍ଛଳଦାରେ ଶ୍ରୀଗୌରହରିଙ୍କୁ ପହଞ୍ଚାଇ ଦେବା ପରେ ଶ୍ରୀଗୌରହରି ତାକୁ ବିଦାୟ ଦେଲେ । ସେ ସମୟରେ ଯବନର ଯେଉଁ ପ୍ରେମପୂର୍ଣ୍ଣ ବ୍ୟବହାର ତାହା ବର୍ଣ୍ଣନାତୀତ । ଶ୍ରୀଗୌରହରିଙ୍କ ଦର୍ଶନମାତ୍ରେ ଅତ୍ୟାଚାରୀ ମଦ୍ୟପ ଯବନରାଜା ମଧ୍ୟ କିପରି ପ୍ରେମ ଲାଭ କରି ଧନ୍ୟାତିଧନ୍ୟ ହୋଇଥିଲେ ତାହା ଶୁଣିଲ ତ ! ସୁତରାଂ ଯେ କେବଳ ତାଙ୍କ ଦର୍ଶନପ୍ରଭାବରେ ମନୁଷ୍ୟଠାରୁ ଆରମ୍ଭ କରି ପଶୁ, ପକ୍ଷୀ ଓ ବୃକ୍ଷଲତାଦିଙ୍କୁ ମଧ୍ୟ ପ୍ରେମ ଦେଇଗଲେ, ତାଙ୍କ ନାମ ବ୍ୟାକୁଳ ହୃଦୟରେ କୀର୍ତ୍ତନ କଲେ କଅଣ ସେ ତାଙ୍କ କୀର୍ତ୍ତନକାରୀଙ୍କୁ ପ୍ରେମ ଦେବେ ନାହିଁ ? ଏଣୁ ସର୍ବଦା କାନ୍ଦି କାନ୍ଦି ଶ୍ରୀଗୌରନାମ କୀର୍ତ୍ତନ କର । ଏହା ହିଁ ତୁମର ଅଧିକାରୋଚିତ ସର୍ବଶ୍ରେଷ୍ଠ ସାଧନ ଏବଂ ଏହାରି ଦ୍ୱାରା ହିଁ ତୁମର ପ୍ରେମଲାଭର ପଥ ସୁଗମ ହେବ ।

ସୁବଳ, ଯଦି ଶ୍ରୀଚୈତନ୍ୟ ମହାପ୍ରଭୁ ସମସ୍ତଙ୍କୁ ମହାମନ୍ତ୍ର କୀର୍ତ୍ତନର ଉପଦେଶ ଦେଇଛନ୍ତି ବୋଲି ତୁମେ କହୁଛ, ତାଙ୍କର ନିଜସ୍ୱ ଉକ୍ତି ହିଁ ତୁମର ଏହି ବିଚାର ସମ୍ପୂର୍ଣ୍ଣ ଭ୍ରମାତ୍ମକ ବୋଲି ପ୍ରମାଣ କରୁ ନାହିଁ କି ?

**ସୁବଳ**—ତାଙ୍କର ସେ ଉକ୍ତି କଅଣ ?

**ବାବାଜୀ ମହାରାଜ**—ଶ୍ରୀଚୈତନ୍ୟ ମହାପ୍ରଭୁ ଯେତେବେଳେ କାଶୀକୁ ଯାଇଥିଲେ ସେତେବେଳେ ପ୍ରକାଶାନନ୍ଦ ସରସ୍ୱତୀ ନାମକ ଜଣେ ଶଙ୍କରପନ୍ଥୀ ସନ୍ନ୍ୟାସୀ କାଶୀରେ ବାସ କରୁଥିଲେ । ସେ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ନାମକୀର୍ତ୍ତନକାଳୀନ ନୃତ୍ୟକୀର୍ତ୍ତନାଦିକୁ ସନ୍ନ୍ୟାସୀର ଧର୍ମ ନୁହେଁ ବୋଲି କହି ନିନ୍ଦା କରୁଥିଲେ । ସେଠାକାର ଜଣେ ମହାରାଷ୍ଟ୍ରୀୟ

ବ୍ରାହ୍ମଣ ଭକ୍ତ ଦିନେ ଯାଇ ପ୍ରକାଶାନନ୍ଦ ସରସ୍ୱତୀଙ୍କୁ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଅଦ୍ଭୁତ ଭାବାବେଶ କଥା କହି ତାଙ୍କର ବହୁ ପ୍ରଶଂସା କଲେ ଏବଂ ତାଙ୍କୁ ଲୋକେ ସ୍ୱୟଂ ଭଗବାନ୍ ବୋଲି ମାନୁଛନ୍ତି ବୋଲି କହିବା ସଙ୍ଗେ ସଙ୍ଗେ ଯେ ଥରେ ତାଙ୍କ କୀର୍ତ୍ତନ ଶୁଣୁଛି ସେ ଆଉ ତାଙ୍କ ସଙ୍ଗ ଛାଡ଼ି ଯିବାକୁ ଚାହୁଁ ନାହିଁ ବୋଲି କହିଲେ ।

ତାହାର ଏହି କଥା ଶୁଣି ଶ୍ରୀପ୍ରକାଶାନନ୍ଦ ସରସ୍ୱତୀ କହିଲେ—"ଆରେ ଶ୍ରୀଚୈତନ୍ୟ ତ ଗୋଟିଏ ମହା ଐନ୍ଦ୍ରଜାଲିକ । ସେ ଏପରି ମାୟା ଜାଣେ ଯେ, ସମସ୍ତଙ୍କୁ ମୋହିତ କରି ଦେଇପାରେ । ସନ୍ନ୍ୟାସୀ ନାଚିବ ଗାଇବ ଏ କଥା ତ କୌଣସି ଶାସ୍ତ୍ରରେ ନାହିଁ । ତୁ ଭୁଲରେ ମଧ୍ୟ ତା ନିକଟକୁ ଯିବୁ ନାହିଁ ।"

ପ୍ରକାଶାନନ୍ଦଙ୍କ ଏହି କଥା ଶୁଣି ସେହି ବ୍ରାହ୍ମଣ ଖୁବ୍ ମନୋଦୁଃଖରେ ଯାଇ ସବୁ କଥା ଶ୍ରୀଚୈତନ୍ୟ ମହାପ୍ରଭୁଙ୍କୁ କହିଲା । ସେ କଅଣ ଉତ୍ତର ଦେଲେ ଶୁଣ ।

"ଦେହଦେହୀର ନାମନାମୀର କୃଷ୍ଣେ ନାହି ଭେଦ ।
ଜୀବେର ଧର୍ମ ନାମ ଦେହ ସ୍ୱରୂପ ବିଭେଦ ॥
**ଅତଏବ କୃଷ୍ଣେର ନାମ ଦେହ ବିଳାସ ।**
**ପ୍ରାକୃତେନ୍ଦ୍ରିୟଗ୍ରାହ୍ୟ ନହେ ହୟ ସ୍ୱପ୍ରକାଶ ॥"**

(ଶ୍ରୀଚୈ:ଚ:ମଧ୍ୟ ୧୭।୧୨୮-୨୯)

ଅର୍ଥାତ୍ ଜୀବର ସ୍ୱରୂପ ଚିନ୍ମୟ, କିନ୍ତୁ ତାହାର ଦେହ, ଧର୍ମ ଓ ନାମ ଜଡ଼ ହୋଇଥିବାରୁ ଏବଂ ସେହି କାରଣରୁ ଏହା ତା ସ୍ୱରୂପଠାରୁ ସମ୍ପୂର୍ଣ୍ଣ ଭିନ୍ନ ଅର୍ଥାତ୍ ପ୍ରାକୃତ ହୋଇଥିବାରୁ ଶ୍ରୀକୃଷ୍ଣଙ୍କ ସ୍ୱରୂପଠାରୁ ଅଭିନ୍ନ ତାଙ୍କ ନାମ, ଦେହ, ସ୍ୱରୂପ ଓ ଲୀଳାଦି ତାହାର ପ୍ରାକୃତ ଇନ୍ଦ୍ରିୟଗ୍ରାହ୍ୟ ନୁହେଁ ।

ସୁବଳ, ଶୁଣିଲ ତ ? ଏଠାରେ ଶ୍ରୀମନ୍ମହାପ୍ରଭୁ କଅଣ କହିଲେ ?

**ସୁବଳ**—ଆଜ୍ଞା, ବୁଝିଲି । ଏଠାରେ ଶ୍ରୀମନ୍ମହାପ୍ରଭୁ କହିଲେ—ଜୀବର ଜିହ୍ୱାଦି ଇନ୍ଦ୍ରିୟ ଜଡ଼ ହୋଇଥିବାରୁ ଶ୍ରୀକୃଷ୍ଣଙ୍କ ଅପ୍ରାକୃତ ନାମ କେବେହେଲେ ତା'ର ଏହି ଜଡ଼େନ୍ଦ୍ରିୟଗ୍ରାହ୍ୟ ହୋଇ ପାରିବ ନାହିଁ ।

## ପ୍ରାକୃତେନ୍ଦ୍ରିୟରେ ଅପ୍ରାକୃତ ଶ୍ରୀକୃଷ୍ଣନାମ ଉଚ୍ଚାରିତ ହୋଇ ପାରିବ ନାହିଁ

**ବାବାଜୀ ମହାରାଜ**—ତାହାହେଲେ ଶ୍ରୀକୃଷ୍ଣନାମପ୍ରଦାତା ସ୍ୱୟଂ ଶ୍ରୀଚୈତନ୍ୟ ମହାପ୍ରଭୁ ଏଠାରେ କି ଶିକ୍ଷା ଦେଲେ ?

**ସୁବଳ**—ଶ୍ରୀକୃଷ୍ଣନାମ ଜୀବର ପ୍ରାକୃତେନ୍ଦ୍ରିୟଗ୍ରାହ୍ୟ ନୁହେଁ ବୋଲି କହିଲେ ।

**ବାବାଜୀ ମହାରାଜ**—କେବଳ ସେତିକି ନୁହେଁ । ଶ୍ରୀଚୈତନ୍ୟଚରିତାମୃତର ରଚୟିତା ଶ୍ରୀଳ କୃଷ୍ଣଦାସ କବିରାଜ ଗୋସ୍ୱାମୀ ପ୍ରଭୁ କଅଣ କହିଛନ୍ତି ଶୁଣ ।

"କୃଷ୍ଣନାମ କରେ ଅପରାଧେର ବିଚାର ।
'କୃଷ୍ଣ' ବଲିଲେ ଅପରାଧୀର ନା ହୟ ବିକାର ॥
ଏକ କୃଷ୍ଣନାମେ କରେ ସର୍ବପାପ ନାଶ ।
ପ୍ରେମେର କାରଣ ଭକ୍ତି କରେନ ପ୍ରକାଶ ॥
ପ୍ରେମେର ଉଦୟେ ହୟ ପ୍ରେମେର ବିକାର ।
ସ୍ୱେଦ-କମ୍ପ-ପୁଲକାଦି ଗଦ୍‌ଗଦାଶ୍ରୁଧାର ॥
ଅନାୟାସେ ଭବକ୍ଷୟ କୃଷ୍ଣେର ସେବନ ।
ଏକ କୃଷ୍ଣନାମେର ଫଲେ ପାଇ ଏତ ଧନ ॥
ହେନ କୃଷ୍ଣନାମ ଯଦି ଲୟ ବହୁବାର ।
ତଭୁ ଯଦି ନହେ ପ୍ରେମ, ନହେ ଅଶ୍ରୁଧାର ॥
ତବେ ଜାନିହ ଅପରାଧ ତାହାତେ ପ୍ରଚୁର ।
କୃଷ୍ଣନାମେର ବୀଜ ତାହେ ନା ହୟ ଅଙ୍କୁର ॥
ଚୈତନ୍ୟ-ନିତ୍ୟାନନ୍ଦେ ନାହି ଏସବ ବିଚାର ।
ନାମ ଲୈତେ ପ୍ରେମ ଦେନ ବହେ ଅଶ୍ରୁଧାର ॥
ସ୍ୱତନ୍ତ୍ର ଈଶ୍ୱର ପ୍ରଭୁ ପରମ ଉଦାର ।
ତାରେ ନା ଭଜିଲେ କଭୁ ନା ହୟ ନିସ୍ତାର ॥"

(ଶ୍ରୀଚୈ:ଚ:୧।୮।୨୧-୨୮)

ଅର୍ଥାତ୍ ଶ୍ରୀକୃଷ୍ଣନାମ ଅପରାଧର ବିଚାର କରେ । ତେଣୁ ଯାହାର ଅପରାଧ ଅଛି, ଶ୍ରୀକୃଷ୍ଣନାମ ଉଚ୍ଚାରଣ କଲେ ମଧ୍ୟ ତାହାର ଅଶ୍ରୁ, କମ୍ପାଦି ସାତ୍ତ୍ୱିକ ବିକାର ପ୍ରକାଶ ପାଏ ନା । ଥରେ 'କୃଷ୍ଣ' ବୋଲି ଉଚ୍ଚାରଣ କରିଦେଲେ ଜୀବର ଜନ୍ମଜନ୍ମାନ୍ତରର ଅର୍ଜିତ ସମସ୍ତ ପାପ ନାଶ ହେବା ସଙ୍ଗେ ସଙ୍ଗେ ସେ ଶ୍ରୀକୃଷ୍ଣପ୍ରେମରେ ଉଦ୍‌ବୁଦ୍ଧ ହୁଏ ଏବଂ ତା'ଠାରେ ପ୍ରେମର ଲକ୍ଷଣସ୍ୱରୂପ ଅଶ୍ରୁ, କମ୍ପ, ପୁଲକାଦି ପ୍ରକାଶ ପାଏ, ପୁଣି ତା ଚକ୍ଷୁ ଅଶ୍ରୁଧାରାରେ ପରିପ୍ଲୁତ ହୋଇଯାଏ । ସେତେବେଳେ ତାହାର ଅନାୟାସରେ ସଂସାରମୁକ୍ତି ହେବା ସଙ୍ଗେ ସଙ୍ଗେ ସେ ନିତ୍ୟ ଗୋଲୋକରେ ଶ୍ରୀକୃଷ୍ଣଙ୍କ ସେବା ଲାଭ କରେ । କୃଷ୍ଣନାମ ଥରେ ମାତ୍ର ଉଚ୍ଚାରଣ କଲେ ଏତେ ଅଦ୍ଭୁତ ଫଳ ମିଳିଥାଏ ।

କିନ୍ତୁ ଏହି ଶ୍ରୀକୃଷ୍ଣନାମ ବହୁବାର ଉଚ୍ଚାରଣ କରି ମଧ୍ୟ ଯଦି ଏହିସବୁ ପ୍ରେମର ବିକାର ପ୍ରକାଶ ନ ପାଏ, ତେବେ ଘୋର ଅପରାଧ ଅଛି ବୋଲି ବୁଝିବାକୁ ହେବ । ଏହି ନାମାପରାଧ କଥା ଶ୍ରୀପଦ୍ମପୁରାଣରେ ବର୍ଣ୍ଣିତ ହୋଇଛି । ପୁଣି ଶ୍ରୀହରିଭକ୍ତିବିଳାସରେ ମଧ୍ୟ ତାହା ଉଲ୍ଲିଖିତ ହୋଇଛି । କିନ୍ତୁ ଶ୍ରୀଚୈତନ୍ୟ ଓ ଶ୍ରୀନିତ୍ୟାନନ୍ଦଙ୍କ ନାମରେ ଏହି ଅପରାଧର ବିଚାର ନାହିଁ । ଏହି ନାମ କୀର୍ତ୍ତନ କରିବା ସଙ୍ଗେ ସଙ୍ଗେ ହିଁ ଅନର୍ଥନିବୃତ୍ତି ଓ ଅର୍ଥପ୍ରବୃତ୍ତି ଏକସଙ୍ଗରେ ହୋଇଥାଏ ।

ଜଗତର ଜୀବମାତ୍ରେ ସମସ୍ତେ ଜନ୍ମଜନ୍ମାନ୍ତରର ଦୁରନ୍ତ ଅପରାଧଗ୍ରସ୍ତ । ତେଣୁ ସେମାନଙ୍କୁ ଶ୍ରୀକୃଷ୍ଣନାମ ବା ଶ୍ରୀମହାମନ୍ତ୍ରର ଉପଦେଶ ଦେବା ସିଦ୍ଧାନ୍ତସମ୍ମତ ନୁହେଁ ।

**ସୁବଳ**—ଆପଣ ଯେ କହିଲେ–''ଚୈତନ୍ୟ-ନିତ୍ୟାନନ୍ଦେ ନାହି ଏ ସବ ବିଚାର । ନାମ ଲୈତେ ପ୍ରେମ ଦେନ ବହେ ଅଶ୍ରୁଧାର ।।'' ଶ୍ରୀଲ କୃଷ୍ଣଦାସ କବିରାଜ ଗୋସ୍ୱାମୀଙ୍କ ଏହି ଲେଖାରୁ ଏପରି ଅର୍ଥ ତ ହୋଇପାରେ; ଯଥା–''ନାମ ଲୈତେ ପ୍ରେମ ଦେନ'' ଅର୍ଥାତ୍ ସେମାନଙ୍କ ଆନୁଗତ୍ୟରେ ସେମାନଙ୍କ ଉପଦିଷ୍ଟ କୃଷ୍ଣନାମ କୀର୍ତ୍ତନ କଲେ ହିଁ ସେମାନେ ଅପରାଧୀର ଅପରାଧ ଖଣ୍ଡନ କରି ତାକୁ ପ୍ରେମ ଦେଇଦେବେ ।

**ବାବାଜୀ ମହାରାଜ**—ସୁବଳ, ତୁମେ ଯେଉଁ ପ୍ରଶ୍ନଟି କଲ ତହିଁରୁ ତୁମର ବୁଦ୍ଧିମତ୍ତାର ପରିଚୟ ମିଳିଲା ନାହିଁ । ଅର୍ଥାତ୍ ଶ୍ରୀଶ୍ରୀଚୈତନ୍ୟ-ନିତ୍ୟାନନ୍ଦଙ୍କ ଈଶ୍ୱରତ୍ୱରେ ତୁମର ପୂର୍ଣ୍ଣ ବିଶ୍ୱାସ ଥିଲା ପରି ମନେ ହେଉ ନାହିଁ । ଶ୍ରୀଚୈତନ୍ୟ ଯେତେବେଳେ ସ୍ୱୟଂ ପ୍ରେମଦାତ୍ରୀ-ଶ୍ରୀରାଧାଭାବବିଭାବିତ ଶ୍ରୀକୃଷ୍ଣ ଏବଂ ଶ୍ରୀନିତ୍ୟାନନ୍ଦ ପ୍ରଭୁ ଯେତେବେଳେ ସ୍ୱୟଂ ଶ୍ରୀବଳରାମ, ସେତେବେଳେ ସେମାନଙ୍କ ନାମ କୀର୍ତ୍ତନ କଲେ ଯେ ଅନାୟାସରେ ଅବିଳମ୍ବେ ପ୍ରେମ ମିଳିପାରିବ, ଏଥିରେ ସନ୍ଦେହର ଅବକାଶ ଆସିଲା କେଉଁଠୁ ? ହଉ, ତୁମ ପ୍ରଶ୍ନର ଉତ୍ତର ଶ୍ରୀଲ କବିରାଜ ଗୋସ୍ୱାମୀଙ୍କ ଉକ୍ତିରେ ହିଁ ଦେଉଛି ।

''ଚୈତନ୍ୟ ନିତ୍ୟାନନ୍ଦେ ନାହି ଏସବ ବିଚାର ।'' (ଶ୍ରୀଚୈଃଚଃ ୧।୮।୨୭)ରେ ଯେଉଁ ଶ୍ରୀକବିରାଜ ଗୋସ୍ୱାମୀ ଏହା ଉଲ୍ଲେଖ କରିଛନ୍ତି, ସେହି ଶ୍ରୀକବିରାଜ ଗୋସ୍ୱାମୀ ଏହାର ସାତ ପୟାର ପୂର୍ବରୁ ତ ଏହିପରି ଉଲ୍ଲେଖ କରିଛନ୍ତି—

''ଅଦ୍ୟାପିହ ଦେଖ—ଚୈତନ୍ୟ ନାମ ଯେଇ ଲୟ ।
କୃଷ୍ଣପ୍ରେମେ ପୁଲକାଶ୍ରୁବିହ୍ୱଳ ସେ ହୟ ।।
'ନିତ୍ୟାନନ୍ଦ' ବଲିତେ ହୟ କୃଷ୍ଣପ୍ରେମୋଦୟ ।
ଆଉଲାୟ ସର୍ବ ଅଙ୍ଗ, ଅଶ୍ରୁଗଙ୍ଗା ବୟ ।।''

(ଶ୍ରୀଚୈଃଚଃ ୧।୮।୧୯-୨୦)

ତାଙ୍କର ଏହି ଉକ୍ତିରୁ ସ୍ୱତନ୍ତ୍ରଭାବରେ ଶ୍ରୀଚୈତନ୍ୟ ଓ ଶ୍ରୀନିତ୍ୟାନନ୍ଦଙ୍କ ନାମ କୀର୍ତ୍ତନ କଲେ ସେମାନେ ଯେ ତତ୍‌କ୍ଷଣାତ୍ ତାଙ୍କ ନାମ-କୀର୍ତ୍ତନକାରୀକୁ ପ୍ରେମରେ ପୁଲକିତ କରିବେ ଓ ନୟନରେ ଅଶ୍ରୁଗଙ୍ଗାର ପ୍ରବାହ ଛୁଟାଇବେ—ଏହା ପ୍ରକୃଷ୍ଟରୂପେ ପ୍ରମାଣିତ ହେଉ ନାହିଁ କି ? ସେ ଯେ ପ୍ରେମଦାତ୍ରୀ ହ୍ଲାଦିନୀର ମୂର୍ତ୍ତିମାନ୍ ପ୍ରକାଶ ଶ୍ରୀରାଧାଙ୍କ ଭାବବିଭାବିତ ସ୍ୱୟଂ ଶ୍ରୀକୃଷ୍ଣ ଏ ବିଷୟରେ ତୁମର ଯଦି ସନ୍ଦେହ ନ ଥାଏ, ତେବେ ତାଙ୍କ ନାମକୀର୍ତ୍ତନରେ ଯେ ପ୍ରେମ ଅବଶ୍ୟ ମିଳିବ ଏଥିରେ ଆଉ ସନ୍ଦେହର ଅବକାଶ ଆସିଲା କେଉଁଠାରୁ ?

ତାପରେ ଦ୍ୱାପର ଯୁଗରେ ଶ୍ରୀକୃଷ୍ଣ ତ ସ୍ୱୟଂ ଈଶ୍ୱରଭାବାବିଷ୍ଟ ହୋଇ ଅବତୀର୍ଣ୍ଣ ହୋଇଥିଲେ । ତେଣୁ ସେ କେବଳ ବୈଧୀ ଭକ୍ତି କଥା ହିଁ ଶିକ୍ଷା ଦେଇଯାଇଛନ୍ତି । ତାଙ୍କ

ଉପଦିଷ୍ଟ ପନ୍ଥାରେ ବୈଧୀ ଭକ୍ତି ସାଧନ କଲେ ବୈକୁଣ୍ଠରେ ଚତୁର୍ବିଧା ମୁକ୍ତି ମିଳିବ । ପ୍ରେମର ନାମଗନ୍ଧ ତହିଁରେ ନାହିଁ । ସେହି କଥା ତ ସେ ତାଙ୍କ ଦ୍ୱାପରଲୀଳା ସଂଗୋପନାନ୍ତେ ନିଜେ ଉପଲବ୍ଧି କରି ତାଙ୍କର ଈଶ୍ୱରଭାବକୁ ଗୋପନ କରି ଶ୍ରୀରାଧାଭାବରେ ବିଭାବିତ ହୋଇ ଭକ୍ତଭାବ ନେଇ ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର–ଏହି ଚାରିଭାବର ପ୍ରେମ ଦେଇ ଜଗଦ୍‌ବାସୀଙ୍କୁ ନଚାଇବେ ବୋଲି ସଂକଳ୍ପ କରି ଅବତୀର୍ଣ୍ଣ ହୋଇଥିଲେ । ତେଣୁ ଶ୍ରୀଚୈତନ୍ୟ ଓ ଶ୍ରୀକୃଷ୍ଣଙ୍କ ଭିତରେ ତୁମେ ଭେଦଭାବ ଆଣୁଛ କାହିଁକି ? କେବଳ ପ୍ରେମଲାଭ ଉଦ୍ଦେଶ୍ୟ ନେଇ ବ୍ୟାକୁଳ ହୃଦୟରେ ଶ୍ରୀଶ୍ରୀଗୌର-ନିତ୍ୟାନନ୍ଦଙ୍କୁ ଚକ୍ଷୁଜଳରେ ବକ୍ଷ ସିକ୍ତ କରି ଡାକିଲେ ଏହି ଜନ୍ମରେ ଯେ ସେମାନେ ନିଶ୍ଚିତରୂପେ ଆମକୁ ପ୍ରେମ ଦେବେ ଏଥିରେ କଅଣ ତିଳେମାତ୍ର ସନ୍ଦେହ ଅଛି ?

**ସୁବଳ–**ଆଜ୍ଞା, ଆପଣଙ୍କ ପରି ମହତଙ୍କ ସଙ୍ଗ ଲାଭ କରି ମୁଁ ଧନ୍ୟ ହୋଇଛି । ଆପଣଙ୍କ ଉପଦେଶରୁ ମୋ ହୃଦୟର ସମସ୍ତ ସନ୍ଦେହ ଦୂର ହୋଇଗଲା । ଆପଣଙ୍କ କହିବା ଅନୁସାରେ ଶ୍ରୀଳ କୃଷ୍ଣଦାସ କବିରାଜ ଗୋସ୍ୱାମୀ, ଶ୍ରୀଳ ପ୍ରବୋଧାନନ୍ଦ ସରସ୍ୱତୀପାଦ, ଶ୍ରୀଳ ହରିଦାସ ଠାକୁର ଓ ଶ୍ରୀଳ ନରୋତ୍ତମ ଠାକୁର ପ୍ରଭୃତି ଯେ ଶ୍ରୀଗୌରନାମକୀର୍ତ୍ତନ ଉପରେ ଯଥେଷ୍ଟ ଗୁରୁତ୍ୱ ଦେଇଛନ୍ତି ଏବଂ ସେମାନଙ୍କ ଅନୁସରଣରେ ଶ୍ରୀଳ ପୁରୀଦାସ ଗୋସ୍ୱାମୀ ଠାକୁର ଯେ ନିଜେ ଆଚରଣ କରି ଅନୁକ୍ଷଣ "ଶ୍ରୀକୃଷ୍ଣଚୈତନ୍ୟ ଶଚୀସୁତ ଗୌରଗୁଣଧାମ" ଏହି ନାମ ଶ୍ରୀଳ ସାର୍ବଭୌମ ଭଟ୍ଟାଚାର୍ଯଙ୍କ ଅନୁସରଣରେ କାନ୍ଦି କାନ୍ଦି ସର୍ବଦା କୀର୍ତ୍ତନ କରିବାକୁ ତାଙ୍କ ଅନୁଗତ ସମସ୍ତଙ୍କୁ ଶିକ୍ଷା ଦେଇଛନ୍ତି, ତାହା ଯଥାର୍ଥ । ମୋ ପରି ଅଜାତରତି କର୍ମାଧିକାରୀ ପକ୍ଷରେ ଶ୍ରୀଗୌରନାମ କୀର୍ତ୍ତନ ଯେ ଅଧିକାରୋଚିତ ସାଧନ, ତାହା ମୁଁ ବେଶ ଉପଲବ୍ଧି କରିଛି । ମୁଁ ଏଣିକି ନିୟମ କରି ଦୈନିକ "ଶ୍ରୀକୃଷ୍ଣଚୈତନ୍ୟ ଶଚୀସୁତ ଗୌରଗୁଣଧାମ" ନାମ କୀର୍ତ୍ତନ କରିବି ।

## ଶ୍ରୀଗୌରାବତାରର ବୈଶିଷ୍ଟ୍ୟ

ଶ୍ରୀଚୈତନ୍ୟ ମହାପ୍ରଭୁ ତ ସ୍ୱୟଂ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କ ମିଳିତ ତନୁ ଏବଂ ସେ ଭକ୍ତଭାବ ନେଇ ଏ ଜଗତରେ ଅବତୀର୍ଣ୍ଣ ହୋଇଛନ୍ତି । ସେ ଯୁଗପତ୍ ଭଗବାନ୍ ଓ ଭକ୍ତ ଉଭୟ ଲୀଳା ହିଁ କରିଛନ୍ତି । ପୁଣି ଶ୍ରୀରାଧାରାଣୀଙ୍କ ଭାବ ଅଙ୍ଗୀକାର କରିଥିବା ହେତୁ ତାଙ୍କ ହୃଦୟରେ ସର୍ବକ୍ଷଣ ଶ୍ରୀକୃଷ୍ଣବିରହରେ ବ୍ୟଥିତ ଭାବ ବିଦ୍ୟମାନ ରହୁଥିଲା ।

ସେ ଯାହାକୁ ଦେଖିଛନ୍ତି, ସେ ମନୁଷ୍ୟ ହେଉ ଅଥବା ପଶୁ, ପକ୍ଷୀ, ବୃକ୍ଷଲତାଦି ହେଉ, ତାକୁ ପ୍ରେମ ଦେଇଛନ୍ତି । ଏ ତ ଗଲା ଦେହଧାରୀ ଜୀବଙ୍କ କଥା, ଜଡ଼ ପ୍ରସ୍ତର ମଧ୍ୟ ତାଙ୍କ ସ୍ପର୍ଶରେ ବିଗଳିତ ହୋଇଛି । ଶ୍ରୀଜଗନ୍ନାଥଦେବଙ୍କ ଶ୍ରୀମନ୍ଦିରରେ ସେ ସବୁଦିନେ ଯେଉଁଠାରେ ଠିଆ ହୋଇ ଶ୍ରୀଜଗନ୍ନାଥଙ୍କ ଦର୍ଶନ କରୁଥିଲେ, ତାଙ୍କ ପ୍ରେମାବେଶହେତୁ ସେ ପଥର ତରଳି ଯାଇ ତହିଁରେ ତାଙ୍କ ଶ୍ରୀପାଦପଦ୍ମଚିହ୍ନ ରହିଯାଇଛି । ପୁଣି ଶ୍ରୀଆଲାଲନାଥ

ଦେବଙ୍କୁ ଦର୍ଶନ କରି ସାଷ୍ଟାଙ୍ଗ ଦଣ୍ଡବତ ପ୍ରଣାମ କଲାବେଳେ ତାଙ୍କ ଶ୍ରୀଅଙ୍ଗସ୍ପର୍ଶରେ ପାଷାଣ ବିଗଳିତ ହୋଇ ତହିଁରେ ତାଙ୍କ ସର୍ବାଙ୍ଗଚିହ୍ନ ଅଦ୍ୟାପି ବିଦ୍ୟମାନ ରହି ତାଙ୍କ ପ୍ରେମମୟତ୍ୱର ସାକ୍ଷୀ ଦେଉଛି । ଏହିପରି ଯେ ଜଡ଼ ଓ ଚେତନ ସମସ୍ତଙ୍କୁ ପ୍ରେମରେ ବିଗଳିତ କରିଦେଇଛନ୍ତି ଏବଂ ସ୍ୱୟଂ ଭଗବାନ୍ ହୋଇଥିବାରୁ ଯାହାଙ୍କ ନାମ ଓ ନାମୀ ଅଭିନ୍ନ, ତାଙ୍କରି ନାମ ଅନୁକ୍ଷଣ ଚକ୍ଷୁଜଳରେ ବକ୍ଷ ସିକ୍ତ କରି ବ୍ୟାକୁଳ ହୃଦୟରେ କୀର୍ତ୍ତନ କଲେ ସେ ଯେ ଏଇ ଜନ୍ମରେ ହିଁ ତାଙ୍କ ନାମକୀର୍ତ୍ତନକାରୀକୁ ପ୍ରେମ ଦେଇ କୃତାର୍ଥ କରିବେ, ଏଥିରେ କଅଣ ତିଳେମାତ୍ର ସନ୍ଦେହ ଥାଇପାରେ ? ସେହିହେତୁରୁ ଶ୍ରୀଳ ପ୍ରବୋଧାନନ୍ଦ ସରସ୍ୱତୀ, ଶ୍ରୀଳ ହରିଦାସ ଠାକୁର, ଶ୍ରୀଳ କୃଷ୍ଣଦାସ କବିରାଜ ଓ ଶ୍ରୀଳ ନରୋତ୍ତମ ଠାକୁରଙ୍କ ଅନୁସରଣରେ ଶ୍ରୀଳ ପୁରୀଦାସ ଗୋସ୍ୱାମୀ ଠାକୁର ତାଙ୍କର ଅନୁଗତ ସମସ୍ତଙ୍କୁ ସର୍ବକ୍ଷଣ କାନ୍ଦି କାନ୍ଦି ଶ୍ରୀଗୌରନାମ କୀର୍ତ୍ତନ କରିବାକୁ ଉପଦେଶ ଦେଇଛନ୍ତି ।

ନାମାପରାଧ କଥା ପଦ୍ମପୁରାଣରେ ଥିଲେ ମଧ୍ୟ ମହାପ୍ରଭୁଙ୍କ ପୂର୍ବବର୍ତ୍ତୀ ଆଚାର୍ଯ୍ୟମାନେ ଏହା ଉପରେ ଗୁରୁତ୍ୱ ଦେଇ ନାହାନ୍ତି । ମହାପ୍ରଭୁ ହିଁ ସର୍ବପ୍ରଥମେ ଏହି ନାମାପରାଧ ଉପରେ ଗୁରୁତ୍ୱ ଦେଲେ ଏବଂ ଏହି ଅପରାଧ ତ୍ୟାଗ କରି କୃଷ୍ଣନାମ କୀର୍ତ୍ତନ କରିବାକୁ ଉପଦେଶ ଦେଲେ । ଅବଶ୍ୟ ଅପରାଧ ତ୍ୟାଗ କରି କୃଷ୍ଣନାମ କରିବା ରଜସ୍ତମୋଗୁଣାବିଷ୍ଟ ପ୍ରାଥମିକ ଭକ୍ତିସାଧକ ପକ୍ଷରେ ବହୁ କଷ୍ଟସାଧ୍ୟ । ତେଣୁ ଶ୍ରୀଗୌରନାମକୀର୍ତ୍ତନ ହିଁ ପ୍ରଶସ୍ତ । ତାଙ୍କ ଆବିର୍ଭାବ କାଳରେ ସେ ଶ୍ରୀଶ୍ରୀରାଧାକୃଷ୍ଣଙ୍କ ମିଳିତତନୁ ବୋଲି ତାଙ୍କ ଦର୍ଶନମାତ୍ରେ ଲୋକେ ପ୍ରେମ ପାଇ ଯାଉଥିଲେ ଏବଂ ତାପରେ ସେମାନେ ତାଙ୍କ ଉପଦିଷ୍ଟ ମହାମନ୍ତ୍ର କୀର୍ତ୍ତନ କରୁଥିଲେ । ବର୍ତ୍ତମାନ ସେହିପରି ପ୍ରେମଲାଭ ସମ୍ଭବ ନୁହେଁ । କାରଣ ସେ ଜଗତରେ ପ୍ରକଟିତ ନାହାନ୍ତି । ତେଣୁ ଶ୍ରୀକୃଷ୍ଣନାମ କୀର୍ତ୍ତନ ଉପରେ ଗୁରୁତ୍ୱ ନ ଦେଇ ଶ୍ରୀଗୌରନାମ କୀର୍ତ୍ତନ ହିଁ ଆମ୍ଭମାନଙ୍କ ପକ୍ଷରେ ପରମୋପାଦେୟ ଓ ଅଧିକାରୋଚିତ ସାଧନ ।

ନାମାଚାର୍ଯ୍ୟ ଶ୍ରୀଳ ହରିଦାସ ଠାକୁର ଦୈନିକ ତିନିଲକ୍ଷ ମହାମନ୍ତ୍ର ଜପ ଓ କୀର୍ତ୍ତନ କରୁଥିଲେ କିନ୍ତୁ ତାଙ୍କ ନିର୍ଯ୍ୟାଣ ସମୟରେ ସେ ସବୁ ଗୌରଭକ୍ତଙ୍କ ପଦଧୂଳି ମସ୍ତକରେ ଭୂଷଣ, ଶ୍ରୀଗୌରପାଦପଦ୍ମକୁ ବକ୍ଷରେ ଧାରଣପୂର୍ବକ ଶ୍ରୀଗୌରହରିଙ୍କ ଶ୍ରୀମୁଖକୁ ଚାହିଁ ରହି 'ଶ୍ରୀକୃଷ୍ଣଚୈତନ୍ୟ'ନାମ କୀର୍ତ୍ତନ କରୁ କରୁ ପ୍ରାଣ ବିସର୍ଜନ କଲେ । ତାଙ୍କର ଏହି ଶିକ୍ଷାଦ୍ୱାରା ସେ ନାମାଚାର୍ଯ୍ୟରୂପେ ଶ୍ରୀଗୌର ଓ ଶ୍ରୀକୃଷ୍ଣ ଯେ ଅଭିନ୍ନ, ତାହା ଜଗତକୁ ଶିକ୍ଷା ଦେଇଗଲେ ।

## ସୁବଳର ଗୌରନାମ କୀର୍ତ୍ତନ ପ୍ରତି ଆଗ୍ରହାତିଶଯ୍ୟ

**ସୁବଳ–**ଆଜ୍ଞା, ଆମ ଭଳି ଜନ୍ମଜନ୍ମାନ୍ତରର ଅପରାଧୀ ଜୀବ ପକ୍ଷରେ ଶ୍ରୀକୃଷ୍ଣନାମ ଅପେକ୍ଷା ଶ୍ରୀଗୌରନାମ କୀର୍ତ୍ତନ ହିଁ ନିଶ୍ଚିତରୂପେ ସର୍ବଶ୍ରେଷ୍ଠ ସାଧନ, ଆପଣଙ୍କ ଉପଦେଶରୁ ଏହି ବିଚାର ମୋ ହୃଦୟରେ ଦୃଢ଼ ହୋଇଛି । ମୁଁ ଏଣିକି ସର୍ବକ୍ଷଣ ଶ୍ରୀଗୌରନାମ ହିଁ କୀର୍ତ୍ତନ କରିବି ।

**ବାବାଜୀ ମହାରାଜ**—ବାଃ, ଠିକ୍ କଥା କହିଲ । ଲୋକେ ଏହି ସିଦ୍ଧାନ୍ତ ବୁଝି ନ ପାରି ଗତାନୁଗତିକ ପନ୍ଥାରେ ଅନବଧାନତାଯୁକ୍ତ ହୋଇ ଶ୍ରୀକୃଷ୍ଣନାମ ମହାମନ୍ତ୍ର ସଂଖ୍ୟାତ ଓ ଅସଂଖ୍ୟାତ ଉଭୟପ୍ରକାରେ କୀର୍ତ୍ତନ କରି ଚାଲିଛନ୍ତି । ଏହା ଶୁଦ୍ଧନାମ ନୁହେଁ, ନାମାପରାଧମାତ୍ର ଯାହା ଭକ୍ତିବିଘାତକ ।

## ଶ୍ରୀକୃଷ୍ଣଙ୍କ ପ୍ରୀତିବିଧାନ ହିଁ ଶ୍ରୀକୃଷ୍ଣନାମ କୀର୍ତ୍ତନର ଉଦ୍ଦେଶ୍ୟ

ତାପରେ ଆଉ ଗୋଟିଏ କଥା ଚିନ୍ତା କର । ଶ୍ରୀହରିନାମକୀର୍ତ୍ତନ ଯେତେବେଳେ ଭକ୍ତିର ଗୋଟିଏ ଅଙ୍ଗ, ଏହା କାହିଁକି କରାଯିବ ?

**ସୁବଳ**—ଆପଣ କହିବା ଅନୁସାରେ ଏହା ଶ୍ରୀକୃଷ୍ଣଙ୍କ ସୁଖ ପାଇଁ ହିଁ କରାଯିବ ।

**ବାବାଜୀ ମହାରାଜ**—ଠିକ୍ କହିଲ । ମନେ କର ତୁମେ ଜଣେ ସୁଗାୟକ । ଜଣେ ବିଶିଷ୍ଟ ବ୍ୟକ୍ତି ତୁମ ଗାନ ଶୁଣିବାକୁ ଆସିଛନ୍ତି । ତୁମେ ଯେତେବେଳେ ଗାନ କରିବାକୁ ଯାଉଛ, ଯେଉଁପରି ଭାବରେ ଗାନ କଲେ ତାଙ୍କର ପ୍ରୀତିପ୍ରଦ ହେବ, ସେଥିପ୍ରତି ତୁମର ତୀକ୍ଷ୍ଣ ଦୃଷ୍ଟି ରହିବ ନା ନାହିଁ ?

**ସୁବଳ**—ଆଜ୍ଞା, ନିଶ୍ଚିତରୂପେ ଯେପରି ଗାନ କଲେ ଶ୍ରୋତାଙ୍କର ପ୍ରୀତିପ୍ରଦ ହେବ, ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ଅବଶ୍ୟ ରହିବ ।

**ବାବାଜୀ ମହାରାଜ**—ଠିକ୍ କଥା । ଏହିପ୍ରକାର ସାଧନକୁ ହିଁ ଶ୍ରୀଲ ସନାତନ ଗୋସ୍ୱାମୀ ପ୍ରଭୁ ସାସଙ୍ଗ ସାଧନ ବୋଲି ଉଲ୍ଲେଖ କରିଛନ୍ତି । 'ସାସଙ୍ଗ' ଅର୍ଥ ମନୋଯୋଗ ସହିତ ସାଧନ । ଶ୍ରୀହରିନାମ ବା ମହାମନ୍ତ୍ର କୀର୍ତ୍ତନ ସମୟରେ ଏହି ମନୋଯୋଗ କେବଳ ଶ୍ରୀକୃଷ୍ଣଙ୍କ ପ୍ରୀତିବିଧାନ ଉଦ୍ଦେଶ୍ୟରେ ହିଁ ରହିବା ଉଚିତ ।

## ସାସଙ୍ଗ ସାଧନ

ଯେ ଯେଉଁ ସାଧନ କରୁ ନା କାହିଁକି ତହିଁରେ ଯତ୍ନଶୀଳତା ନ ରହିଲେ ତାହା ଠିକ୍ ସାଧନପଦବାଚ୍ୟ ହେବ ନାହିଁ । ସେହିପରି ଶ୍ରୀହରିନାମ କୀର୍ତ୍ତନ ଯାହା କି ଏ ସଂସାରସାଗରରୁ ଉତ୍ତୀର୍ଣ୍ଣ ହୋଇ ଭଗବତ୍‌ପାଦପଦ୍ମ ଲାଭର ସର୍ବୋତ୍କୃଷ୍ଟ ସାଧନ, ତହିଁରେ ଅଯତ୍ନଶୀଳ ଅର୍ଥାତ୍ ଅନ୍ୟମନସ୍କ ହେବା କୌଣସିମତେ ଉଚିତ ନୁହେଁ । ମୁଁ ଶ୍ରୀହରିନାମ ଗ୍ରହଣ କଲାବେଳେ ମନେ ମନେ ଚିନ୍ତା କରିବି ଯେ, ମୁଁ ବ୍ୟାକୁଳ ହୃଦୟରେ ତାଙ୍କ ଅହୈତୁକୀ କୃପାଲାଭ ଉଦ୍ଦେଶ୍ୟରେ ତାଙ୍କୁ ଡାକୁଛି । "ହେ ପ୍ରଭୋ ! କେବେ ତୁମ କୃପାଦୃଷ୍ଟି ମୋ ପରି ଅଧମ ଉପରେ ପଡ଼ିବ ? ତୁମର କରୁଣାର ଅନ୍ତ ନାହିଁ । ହେ ନିତ୍ୟାନନ୍ଦ ପ୍ରଭୋ ! ତୁମେ ତୁମ ଅଳଙ୍କାର ଅପହରଣକାରୀ ଦସ୍ୟୁମାନଙ୍କୁ ନ ଦେଖି ମଧ୍ୟ କେବଳ ମନେ ମନେ ସେମାନଙ୍କ ମଙ୍ଗଳ କାମନା କରି ସେମାନଙ୍କୁ ତତ୍‌କ୍ଷଣାତ୍ ପ୍ରେମ ଦେଇଦେଲ । ସେମାନେ କଅଣ ସାଧନ କରିଥିଲେ ନା ସାଧନ କରିବାର ସାମାନ୍ୟତମ ବାସନା ସେମାନଙ୍କ ହୃଦୟରେ ଥିଲା ? ସେମାନେ ତ ଅପରାଧ କରିବାକୁ

ଆସିଥିଲେ । ସେମାନଙ୍କୁ ଯେତେବେଳେ ପ୍ରେମ ଦେଲ, ମୋ ଭଳି ପତିତ ପ୍ରତି ତୁମ କୃପାଦୃଷ୍ଟି କିପରି ପଡ଼ିବ, ସେହି ଆଶାରେ ବ୍ୟାକୁଳ କ୍ରନ୍ଦନ କରୁଛି । ହେ ଗୌରହରି ! ତୁମର କି ମହାବଦାନ୍ୟତା ! ତୁମେ ଶ୍ରୀନିତ୍ୟାନନ୍ଦଙ୍କୁ ନିମିତ୍ତ କରି ଜଗାଇ-ମାଧାଇଙ୍କ ଭଳି ମହାପାପୀ ଓ ମଦ୍ୟପଙ୍କୁ ପର୍ଯ୍ୟନ୍ତ ପ୍ରେମ ଦେଲ ! ତୁମେ ନିଜେ ଝାଡ଼ଖଣ୍ଡରେ ବନ୍ୟପଶୁ ଓ ବୃକ୍ଷଲତାଦିଙ୍କୁ ମଧ୍ୟ ପ୍ରେମ ଦେଲ ! ଏ ନରାଧମ ମହାପାଷଣ୍ଡ କେବେ ତୁମର ସେହି ଅସୀମ କରୁଣାର ପାତ୍ର ହେବ ?'' ଶ୍ରୀହରିନାମ ଗ୍ରହଣ କଲାବେଳେ ଏହିପରି ନିଜର ପରମ ଶୋଚ୍ୟତମତା ଓ ଇଷ୍ଟଦେବଙ୍କର ପରମୋଦାରତା କଥା ସର୍ବକ୍ଷଣ ସ୍ମୃତିପଟରେ ରଖି ତାଙ୍କ ଅହୈତୁକୀ କୃପାଲାଭ ଉଦ୍ଦେଶ୍ୟରେ ବ୍ୟାକୁଳ କ୍ରନ୍ଦନ କରିବାକୁ ପଡ଼ିବ ।

''ନୟନଂ ଗଳଦଶ୍ରୁଧାରୟା ବଦନଂ ଗଦ୍‌ଗଦରୁଦ୍ଧୟା ଗିରା । ପୁଲକୈର୍ନିଚିତଂ ବପୁଃ କଦା ତବ ନାମଗ୍ରହଣେ ଭବିଷ୍ୟତି ॥'' (ଶିକ୍ଷାଷ୍ଟକ ଷଷ୍ଠ ଶ୍ଳୋକ) । ହେ ଭଗବନ୍ ! ଏପରି ଦିନ ମୋର କେବେ ଆସିବ ଯେଉଁଦିନ ତୁମ ନାମ ଗ୍ରହଣ କରୁ କରୁ ଅଶ୍ରୁଧାରାରେ ମୋ ଚକ୍ଷୁ ପରିପୂର୍ଣ୍ଣ ହେବ, ମୁଖ ଗଦ୍‌ଗଦବାକ୍ୟରେ ରୁଦ୍ଧ ହେବ ଓ ସମସ୍ତ ଦେହ ପୁଲକରେ ଭରିଯିବ ? ଶ୍ରୀଗୌରହରିଙ୍କର ଏହି ଶିକ୍ଷାରୁ ଜଣାଯାଏ ଯେ, କ୍ରନ୍ଦନ ହିଁ ଭକ୍ତି ଏବଂ ଏହି କ୍ରନ୍ଦନଦ୍ୱାରା ହିଁ ମହାବଦାନ୍ୟ ପ୍ରଭୁଦ୍ୱୟଙ୍କ କୃପାଦୃଷ୍ଟି ଆମ ପ୍ରତି ଅବଶ୍ୟ ଆକୃଷ୍ଟ ହେବ । ପ୍ରଥମ କଥା ଆମେ ଯେ ସେମାନଙ୍କ କୃପାର ଅକପଟ ପ୍ରାର୍ଥୀ, ଏହା ଆମ ଆର୍ତ୍ତିଯୁକ୍ତ ଭାବଦ୍ୱାରା ସେମାନଙ୍କୁ ଜଣାଇଲେ ସିନା ସେମାନଙ୍କ କୃପାଦୃଷ୍ଟି ଆମ ଉପରେ ପଡ଼ିବ, ତା ନ କରି କେବଳ ଅନ୍ୟମନସ୍କ ହୋଇ ନାମ କଲେ ତାଙ୍କ କୃପାଦୃଷ୍ଟି କିପରି ଆକୃଷ୍ଟ ହୋଇପାରିବ ? ସେହିହେତୁରୁ ଶ୍ରୀଳ କବିରାଜ ଗୋସ୍ୱାମୀ ପ୍ରଭୁ କହିଲେ–''ବହୁ ଜନ୍ମ କରେ ଯଦି ଶ୍ରବଣ କୀର୍ତ୍ତନ । ତଥାପି ନା ପାୟ କୃଷ୍ଣପଦେ ପ୍ରେମଧନ ॥'' ଅର୍ଥାତ୍ ଏହିପ୍ରକାର ଅନ୍ୟମନସ୍କ ହୋଇ ବହୁ ଜନ୍ମ ଶ୍ରବଣ କୀର୍ତ୍ତନ କଲେ ମଧ୍ୟ ପ୍ରେମ ମିଳିବ ନାହିଁ ।

ଅତଏବ ଅନବଧାନତାଯୁକ୍ତ ନୁହେଁ; ଆର୍ତ୍ତିଯୁକ୍ତ ନାମକୀର୍ତ୍ତନକୁ ହିଁ ଶ୍ରୀଳ ସନାତନ ଗୋସ୍ୱାମିପାଦ 'ସାସଙ୍ଗ ସାଧନ' ଆଖ୍ୟା ଦେଇଛନ୍ତି ଏବଂ ଏହି ସାସଙ୍ଗ ସାଧନ ହିଁ ଶ୍ରୀକୃଷ୍ଣଙ୍କ କୃପାପ୍ରାପ୍ତିର ଏକମାତ୍ର ଉପାୟ । ତାଛଡ଼ା ତାଙ୍କ ବୃହଭାଗବତାମୃତରେ ସେ ଆର୍ତ୍ତିଯୁକ୍ତ ନାମକୀର୍ତ୍ତନକୁ ହିଁ ଭଗବତ୍‌କୃପାଦୃଷ୍ଟି ଆକୃଷ୍ଟ କରିବାର ସର୍ବଶ୍ରେଷ୍ଠ ଉପାୟ ବୋଲି ଉଲ୍ଲେଖ କରିଛନ୍ତି । ଏହା ପୂର୍ବରୁ କହିଛି ।

ବସ୍ତୁତଃ ଏହିପ୍ରକାର ସାଧନପ୍ରଣାଳୀ ହିଁ ଶ୍ରେଷ୍ଠ ସାଧନପ୍ରଣାଳୀ । ତାପରେ ନିଜର ପୂର୍ବ ଦୁଷ୍କର୍ମ କଥା ଚିନ୍ତା କରି ଘୋର ଅନୁତାପଗ୍ରସ୍ତ ହୋଇ ସର୍ବକ୍ଷଣ ଏହି ହରିନାମ ବ୍ୟାକୁଳତାର ସହିତ କୀର୍ତ୍ତନ କରିବା ସଙ୍ଗେ ସଙ୍ଗେ ଏହା ଉଚ୍ଚସ୍ୱରରେ ଓ ସ୍ପଷ୍ଟାକ୍ଷରରେ ହେବା ହିଁ ବିଧେୟ । ଏହା ହିଁ ଯଥାର୍ଥରେ ସାଧନଭକ୍ତି । ଏହିପ୍ରକାର ଭକ୍ତି କଲେ ଏହି ଜନ୍ମରେ ହିଁ ଯେ ପ୍ରେମଲାଭ ଅନିବାର୍ଯ୍ୟ ହେବ, ଏଥିରେ କଅଣ ସନ୍ଦେହ ଅଛି ?

ପୂର୍ବରୁ ତ କହିଛି ଯେଉଁ ଭଗବାନଙ୍କୁ ଭୁଲି ତାଙ୍କ ନିତ୍ୟଦାସ ଆମେ ଏ ସଂସାରଦୁଃଖ ଭୋଗ କରୁଛୁ, ସେହି ଭଗବାନଙ୍କୁ ପୁଣି ଅନୁକ୍ଷଣ ସ୍ମରଣ କରିବା ହିଁ ଏହି ସଂସାରଦୁଃଖରୁ ଉତ୍ତୀର୍ଣ୍ଣ ହୋଇ ତାଙ୍କ ନିତ୍ୟସେବାଲାଭ କରିବାର ଏକମାତ୍ର ଉପାୟ । ସୁତରାଂ ଶ୍ରୀହରିନାମ ଗ୍ରହଣ ସମୟରେ ଆମେ ଯେ ତାଙ୍କ ନିତ୍ୟଦାସ, ତାଙ୍କ ସେବା ଭୁଲି ଏ ମାୟା କବଳରେ ପଡ଼ିଛୁ, ଏହି ଚିନ୍ତା ସର୍ବକ୍ଷଣ ହୃଦୟରେ ରଖିବା ଆବଶ୍ୟକ । ଏହା ସଙ୍ଗେ ସଙ୍ଗେ କିପରି ଏ ସଂସାରସାଗରରୁ ଉତ୍ତୀର୍ଣ୍ଣ ହୋଇ ତାଙ୍କ ସେବା ଲାଭ କରି ଜୀବନ ସାର୍ଥକ କରିବା ଏହି ଚିନ୍ତା କରି କାନ୍ଦି କାନ୍ଦି ତାଙ୍କୁ ଡାକିବା ହିଁ ସର୍ବଶ୍ରେଷ୍ଠ ସାଧନ । ଏହା ହିଁ ନାମକୀର୍ତ୍ତନର ଉଦ୍ଦେଶ୍ୟ । ଏ ସମ୍ବନ୍ଧରେ ଶ୍ରୀଗୌରହରିଙ୍କର ଏହି ଶିକ୍ଷା ଆମକୁ ପଥ ଦେଖାଇବ–"ଅୟି ନନ୍ଦତନୁଜ କିଙ୍କରଂ ପତିତଂ ମାଂ ବିଷମେ ଭବାମ୍ବୁଧୌ । କୃପୟା ତବ ପାଦପଙ୍କଜସ୍ଥିତ ଧୂଳିସଦୃଶଂ ବିଚିନ୍ତୟ ।" (ଶିକ୍ଷାଷ୍ଟକ ୫ମ ଶ୍ଲୋକ)–ଅର୍ଥାତ୍ ହେ ନନ୍ଦନନ୍ଦନ । ମୁଁ ତୁମର ନିତ୍ୟ ଦାସ । ତୁମ ସେବା ଭୁଲି ମାୟାବଦ୍ଧ ହୋଇ ଏ ସଂସାରସାଗରରେ ପଡ଼ିଛି । କୃପା କରି ଏ ଅଧମକୁ ତୁମ ପଦଧୂଳିରୂପେ ଜ୍ଞାନ କର ଏବଂ ତୁମ ସେବକକୁ ତୁମ ନିତ୍ୟ ସେବାରେ ନିଯୁକ୍ତ କର ।

## ବିଷ୍ଣୁସ୍ମୃତି ହିଁ ସବୁ ସାଧନର ମୂଳ ଉଦ୍ଦେଶ୍ୟ

ବିଷ୍ଣୁସ୍ମୃତି ଲାଭ ହିଁ ସବୁ ସାଧନର ମୂଳ ଉଦ୍ଦେଶ୍ୟ । "ସ୍ମର୍ତ୍ତବ୍ୟଃ ସତତଂ ବିଷ୍ଣୋଃ ।" ଅର୍ଥାତ୍ ଶ୍ରୀବିଷ୍ଣୁ ହିଁ ସର୍ବକ୍ଷଣ ସ୍ମରଣୀୟ । ଏହି ଶାସ୍ତ୍ରବାକ୍ୟ ସବୁ ସାଧନର ମୂଳ ଉଦ୍ଦେଶ୍ୟ । ତେଣୁ ଅନ୍ୟମନସ୍କ ହୋଇ ଶ୍ରୀହରିନାମଗ୍ରହଣ ସାଧନପଦବାଚ୍ୟ ନୁହେଁ ।

**ସୁବଳ**–ଅଜାମିଳ ଯେତେବେଳେ ପୁଅକୁ ଉପଲକ୍ଷ କରି ନାରାୟଣ ନାମ ଉଚ୍ଚାରଣ କରି ବୈକୁଣ୍ଠକୁ ଗଲେ, ସେ ଅବସ୍ଥାରେ ଆମେ ଯେ କୌଣସି ପ୍ରକାରେ ଭଗବାନଙ୍କ ନାମ ଉଚ୍ଚାରଣ କଲେ କାହିଁକି ଫଳ ହେବ ନାହିଁ ?

**ବାବାଜୀ ମହାରାଜ**–ଏହା ତ ସୁବିଧାବାଦୀଙ୍କ ଉକ୍ତି । ଅଜାମିଳ ବହୁତ ପାପ କରିଥିଲେ ସତ୍ୟ କିନ୍ତୁ ତାଙ୍କର ଅପରାଧ ନ ଥିଲା । ପୁଅକୁ ଉପଲକ୍ଷ କରି ସେ ନାରାୟଣ ନାମ ଉଚ୍ଚାରଣ କରିଥିଲେ । ତହିଁରେ ନାରାୟଣଙ୍କ ସ୍ମୃତି ତାଙ୍କ ହୃଦୟରେ ନ ଥିଲା, କେବଳ ପୁଅର ହିଁ ସ୍ମୃତି ରହିଥିଲା । ସେ ନିରପରାଧ ହୋଇଥିବାରୁ ମୃତ୍ୟୁ ପୂର୍ବରୁ 'ନାରାୟଣ' ନାମର କେବଳ ଉଚ୍ଚାରଣମାତ୍ରେ ତାଙ୍କର ସମସ୍ତ ପାପ ଦୂର ହୋଇ ମୁକ୍ତି ଲାଭ ହୋଇଥିଲା । ଏହା ହିଁ ନାମାଭାସର ଶେଷ ଫଳ । ଏହି ସମୟରେ ବିଷ୍ଣୁଦୂତମାନଙ୍କ ସଙ୍ଗେ ଯମଦୂତମାନଙ୍କ କଥୋପକଥନରୁ ଶ୍ରୀହରିନାମର ଅଶେଷ ମାହାତ୍ମ୍ୟ ଶୁଣି ତାଙ୍କର ଆତ୍ମଧିକ୍କାରରୂପକ ବହିର୍ଲକ୍ଷଣ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ବିଷ୍ଣୁଭଜନ କରିବାର ଦୃଢ଼ ବାସନା ହୃଦୟରେ ଜାଗ୍ରତ ହେଲା । ଏହା ଅଜାମିଳଙ୍କ ନାମ ଉଚ୍ଚାରଣର ଫଳ ନୁହେଁ, ବିଷ୍ଣୁଦୂତରୂପୀ ମହତ୍‌ମାନଙ୍କ ସଙ୍ଗ ଓ କୃପାର ହିଁ ଫଳ । ସେହି ବିଷ୍ଣୁଦୂତମାନଙ୍କ କୃପାରୁ ତାଙ୍କର ଭଜନପ୍ରବୃତ୍ତି ଜାଗିଲା ଏବଂ ସେ ଭଜନ କରି ବୈକୁଣ୍ଠକୁ ଯାଇଥିଲେ ।

**ସୁବଳ**–ଆଜ୍ଞା, ଆପଣଙ୍କ କୃପାରୁ ମୋର ଭ୍ରମଧାରଣା ଦୂର ହେଲା । ମହତ୍‌କୃପା ହିଁ ଯେ ଅନାଦିବିମୁଖ ଜୀବ ହୃଦୟରେ ଭଗବଦ୍‌ଭଜନ ପ୍ରବୃତ୍ତି ଜାଗ୍ରତ କରାଇବାର ଏକମାତ୍ର କାରଣ, ଏହା ମୋର ହୃଦୟଙ୍ଗମ ହେଲା । ପୁଣି ବିଷ୍ଣୁସ୍ମୃତିକୁ ସର୍ବକ୍ଷଣ ହୃଦୟରେ ସ୍ଥାନ ଦେବା ହିଁ ସାସଙ୍ଗ ସାଧନ ଏବଂ ଏହି ସାସଙ୍ଗ ସାଧନ ହିଁ ଯେ ସାଧନପଦବାଚ୍ୟ ସେହି ବିଚାର ମଧ ମୋ ହୃଦୟରେ ଦୃଢ଼ ହେଲା ।

## ଶ୍ରୀଗୌରନାମ ସର୍ବକ୍ଷଣ କୀର୍ତ୍ତନୀୟ

**ବାବାଜୀ ମହାରାଜ**–କେବଳ ଘରେ ବସି ହରିନାମ ଗ୍ରହଣ ନୁହେଁ, ଯେତେବେଳେ କାର୍ଯ୍ୟୋପଲକ୍ଷରେ ଯେଉଁଆଡ଼େ ଯାଉଛ ସେତେବେଳେ ମଧ ସର୍ବକ୍ଷଣ ସ୍ମୃତିଯୁକ୍ତ ହୋଇ "ଶ୍ରୀଶ୍ରୀନିତାଇଗୌରସୀତାନାଥ" ଏହି ନାମ କୀର୍ତ୍ତନ କରୁଥିବ । ଶ୍ରୀପ୍ରହ୍ଲାଦ ମହାରାଜ ସର୍ବକ୍ଷଣ ଗାଢ଼ବିଷ୍ଣୁସ୍ମୃତିରେ ଆବିଷ୍ଟ ରହିଥିବାରୁ ହିରଣ୍ୟକଶିପୁଦ୍ୱାରା ପ୍ରଦତ୍ତ ଅକଥନୀୟ ଅତ୍ୟାଚାର କଥା ସେ ତିଳେମାତ୍ର ଅନୁଭବ କରି ପାରି ନାହାନ୍ତି । ସୁତରାଂ ସର୍ବଦା ଶ୍ରୀଭଗବତ୍‌ସ୍ମୃତିରେ ଆବିଷ୍ଟ ରହିବା ହିଁ ସର୍ବଶ୍ରେଷ୍ଠ ସାଧନ । ସେହି କାରଣରୁ ଶ୍ରୀମଦ୍‌ଭାଗବତ (୭।୧୫।୨୪)ରେ ଉକ୍ତ ହୋଇଛି–

"କୃପୟା ଭୂତଜଂ ଦୁଃଖଂ ଦୈବଂ ଜହ୍ୟାତ୍ ସମାଧିନା ।
ଆତ୍ମଜଂ ଯୋଗବୀର୍ଯ୍ୟେଣ ନିଦ୍ରାଂ ସତ୍ତ୍ୱନିଷେବୟା ।।"

ଅର୍ଥାତ୍ ସବୁ ପ୍ରାଣୀଙ୍କୁ ନିଜ ପୁଅ ପରି ସ୍ନେହ କରିବାଦ୍ୱାରା ଆଧିଭୌତିକ ତାପ ଅର୍ଥାତ୍ ଅନ୍ୟ ପ୍ରାଣୀମାନଙ୍କଦ୍ୱାରା ପ୍ରଦତ୍ତ ଦୁଃଖ ଭୋଗ କରିବାକୁ ପଡ଼ିବ ନାହିଁ । ଏହି ଉପାୟରେ ଆମେ ଅନାୟାସରେ ଆଧିଭୌତିକ ତାପରୁ ଉଦ୍ଧାର ପାଇବୁ । ପୁଣି ସର୍ବକ୍ଷଣ ବିଷ୍ଣୁସ୍ମୃତି ବା ଶ୍ରୀଗୌରହରିଙ୍କ ସ୍ମୃତିକୁ ହୃଦୟରେ ରଖିବା ହେଲା ସମାଧି । ଏହି ସମାଧିଦ୍ୱାରା ଆଧିଦୈବିକ ତାପରୁ ବର୍ତ୍ତି ପାରିବା । ଆଉ ଯୋଗ ଅର୍ଥାତ୍ ପ୍ରାଣାୟାମାଦିଦ୍ୱାରା ବିଭିନ୍ନ ରୋଗରୂପକ ଆଧ୍ୟାତ୍ମିକ ତାପରୁ ଉଦ୍ଧାର ପାଇ ପାରିବା । ସାତ୍ତ୍ୱିକ ଦ୍ରବ୍ୟ ଗ୍ରହଣରୂପକ ସତ୍ତ୍ୱଗୁଣର ଆଶ୍ରୟଦ୍ୱାରା ନିଦ୍ରାକୁ ଜୟ କରି ପାରିବା ।

ଏହିସବୁ ଉପାୟ ଅବଲମ୍ବନ କଲେ ସାଧକ ସର୍ବଦା ବିଷ୍ଣୁସ୍ମୃତିଯୁକ୍ତ ହୋଇ ଅନାୟାସରେ ଏହି ସଂସାରସାଗରରୁ ଉତ୍ତୀର୍ଣ୍ଣ ହେବା ସଙ୍ଗେ ସଙ୍ଗେ ଭଗବତ୍‌ପାଦପଦ୍ମ ଲାଭ କରି ଜୀବନ ସାର୍ଥକ କରିପାରିବ ।

ଦେଖ ସୁବଳ, ଅନାଦିକାଳରୁ ଆମ ସୃଷ୍ଟି ହେବା ଦିନରୁ ଆମେ ଭଗବାନଙ୍କୁ ଭୁଲି ଏ ସଂସାରକୁ ଆସି ଅକଥନୀୟ ଦୁଃଖ ଭୋଗ କରୁଛୁ । ଦୈବକ୍ରମେ କୌଣସି ଗୌରାନୁଗ ମହତଙ୍କ ସଙ୍ଗ ଲାଭ ହୋଇଗଲେ ତାଙ୍କ କୃପାରୁ ହୃଦୟରେ ଦୈନ୍ୟ ଓ ଆର୍ତ୍ତିର ସଞ୍ଚାର ହେବ । ତାଙ୍କରି ଆନୁଗତ୍ୟରେ ସର୍ବକ୍ଷଣ ବ୍ୟାକୁଳ ହୃଦୟରେ ଶ୍ରୀଗୌରନାମ କୀର୍ତ୍ତନ କରିବା

ସଙ୍ଗେ ସଙ୍ଗେ ଜୀବନନିର୍ବାହକାଳୀନ ସମସ୍ତ କାର୍ଯ୍ୟ ଯେପରି ତାଙ୍କ ପ୍ରୀତି ଉଦ୍ଦେଶ୍ୟରେ ଅନୁଷ୍ଠିତ ହୁଏ, ସେଥିପ୍ରତି ସର୍ବଦା ତୀକ୍ଷ୍ଣ ଦୃଷ୍ଟି ରହିବ ।

**ଏହା ହିଁ ସର୍ବଶ୍ରେଷ୍ଠ ସାଧନ ଏବଂ ଏହିପ୍ରକାର ସାଧନଦ୍ୱାରା ଏହି ଜନ୍ମରେ ହିଁ ପ୍ରେମଲାଭ ଯେ ଅନିବାର୍ଯ୍ୟ ହେବ, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।**

"ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେଽର୍ଜୁନ ତିଷ୍ଠତି ।
ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରାରୂଢ଼ାନି ମାୟୟା ॥

(ଶ୍ରୀ:ଗୀ: ୧୮।୬୧)

ଆର୍ଥାତ୍ ହେ ଅର୍ଜୁନ ! ଶରୀରରୂପକ ଯନ୍ତ୍ରରେ ଆରୂଢ଼ ସମସ୍ତ ପ୍ରାଣୀଙ୍କ ଅନ୍ତର୍ଯ୍ୟାମୀ ପରମେଶ୍ୱର ନିଜ ମାୟାରେ ସେମାନଙ୍କ କର୍ମାନୁସାରେ ଭ୍ରମଣ କରାଇ ସେମାନଙ୍କ ହୃଦୟରେ ରହିଛନ୍ତି ।

ଶ୍ରୀଗୀତାରେ ଉକ୍ତ ଶ୍ରୀକୃଷ୍ଣଙ୍କର ଏହି ଉପଦେଶାନୁଯାୟୀ ମୋ ପ୍ରତି ଯେ ଯେଉଁ ବ୍ୟବହାର କରୁ ନା କାହିଁକି ଏଥିରେ ନିଶ୍ଚିତରୂପେ ପରମାତ୍ମାଙ୍କ ନିର୍ଦ୍ଦେଶ ଅଛି, ଏହି ବିଚାରରେ କାହାରି ଦୋଷ ନ ଦେଖି ସର୍ବକ୍ଷଣ କାନ୍ଦି କାନ୍ଦି ସେହି ଅନ୍ତର୍ଯ୍ୟାମୀ ପରମେଶ୍ୱରଙ୍କୁ ଡାକୁ ଡାକୁ ଯେପରି ପ୍ରାଣ ଯାଏ, ଏହି ଚିନ୍ତା ସର୍ବଦା ହୃଦୟରେ ଉଦ୍‌ବୁଦ୍ଧ ରଖିବା ହିଁ ଭକ୍ତିସାଧକର ସର୍ବଶ୍ରେଷ୍ଠ ସାଧନ ।

ତାଛଡ଼ା ସର୍ବକ୍ଷଣ ନିଜର ଅନନ୍ତ ଦୋଷକଥା ଚିନ୍ତା କରି କିପରି ସେ ଦୋଷମୁକ୍ତ ହେବା ସଙ୍ଗେ ସଙ୍ଗେ ସର୍ବକ୍ଷଣ ସ୍ୱଦୋଷଦର୍ଶୀ ଓ ଅଦୋଷଦର୍ଶୀ ହୋଇ ଶ୍ରୀଗୌରନାମ-କୀର୍ତ୍ତନରେ ରତ ରହିବି ସେହିପ୍ରକାର ପ୍ରାର୍ଥନା ସର୍ବଦା ହୃଦୟରେ ଜାଗିବା ଆବଶ୍ୟକ । ଅବଶ୍ୟ ଦେହଯାତ୍ରା ନିର୍ବାହକାଳରେ ଦେହସମ୍ବନ୍ଧୀୟ ଚିନ୍ତା ହୃଦୟରେ ଜାଗ୍ରତ ହୋଇ ଅନେକ ସମୟରେ ଆମ ହୃଦୟକୁ ବିବ୍ରତ କରି ପକାଏ । ଏହି କାରଣରୁ ଆମର ଭଜନପଥରୁ ଚ୍ୟୁତ ହେବାର ସମ୍ଭାବନା ଯଥେଷ୍ଟ ଥାଏ । ସେ ସମୟରେ ବ୍ୟାକୁଳ ହୃଦୟରେ ଉଚ୍ଚସ୍ୱରରେ କାନ୍ଦି କାନ୍ଦି "ଶ୍ରୀଶ୍ରୀନିତାଇ-ଗୌର-ସୀତାନାଥ" ନାମ କୀର୍ତ୍ତନ କଲେ ସେହି ଅସଚ୍ଚିନ୍ତା ହୃଦୟରୁ ଦୂର ହୋଇ ତାଙ୍କ ସ୍ମୃତି ଜାଗ୍ରତ ହେବ । ଏହିପରି ଆମର ସମସ୍ତ ଯତ୍ନ ଓ ଚେଷ୍ଟା ତାଙ୍କ ସ୍ମୃତିକୁ ସର୍ବକ୍ଷଣ ହୃଦୟରେ ଜାଗ୍ରତ ରଖିବା ଉଦ୍ଦେଶ୍ୟରେ ହେବା ହିଁ ବିଧେୟ ।

**ସୁବଳ**—ଆଜ୍ଞା, ଆପଣ ତ ଶ୍ରୀଗୌରଭଜନ କଥା ବରାବର କହିଆସୁଥିଲେ, ଏବେ ଶ୍ରୀଶ୍ରୀ ନିତାଇ-ଗୌର-ସୀତାନାଥ" ନାମ କୀର୍ତ୍ତନ କରିବାକୁ କହୁଛନ୍ତି, ଏହାର ତାତ୍ପର୍ଯ୍ୟ କଅଣ କୃପା କରି ଜଣାଇଲେ କୃତାର୍ଥ ହୁଅନ୍ତି ।

**ବାବାଜୀ ମହାରାଜ**—ଶ୍ରୀନିତ୍ୟାନନ୍ଦ ହେଲେ ଶ୍ରୀଗୌରଦାତା । ସେ ସର୍ବକ୍ଷଣ ସମସ୍ତଙ୍କୁ ଶ୍ରୀଗୌରଭଜନ କରିବାକୁ ପ୍ରବର୍ତ୍ତାଉଥିଲେ । ତେଣୁ ତାଙ୍କ କୃପା ହେଲେ ଶ୍ରୀଗୌରଭଜନରେ ଦୃଢ଼ମତି ହେବ । ଶ୍ରୀଅଦ୍ୱୈତାଚାର୍ଯ୍ୟ ତାଙ୍କ ବ୍ୟାକୁଳ ପ୍ରାର୍ଥନାଦ୍ୱାରା ଓ ଜଳ-ତୁଳସୀଦ୍ୱାରା

ଶ୍ରୀଶାଳଗ୍ରାମଙ୍କ ସେବା କରି ଜଗତର ଜୀବଙ୍କର ଉଦ୍ଧାର ପାଇଁ ଶ୍ରୀଗୌରଙ୍କୁ ଏ ଜଗତରେ ପ୍ରକଟ କରାଇଥିଲେ । ସେହି କାରଣରୁ ତାଙ୍କୁ ଶ୍ରୀଗୌରଅଣା ଠାକୁର କୁହାଯାଏ । ଏହି ତିନି ଠାକୁରଙ୍କୁ ବ୍ୟାକୁଳ ହୃଦୟରେ ଡାକି ପାରିଲେ, ଏହି ଜନ୍ମରେ ହିଁ ସେମାନେ ଆମକୁ ପ୍ରେମଧନରେ ଧନୀ କରିଦେବେ । ତାଛଡ଼ା ଶ୍ରୀଗୌରପ୍ରିୟ ଶ୍ରୀ ନିତ୍ୟାନନ୍ଦ ପ୍ରଭୁ ଓ ଶ୍ରୀ ଅଦ୍ୱୈତପ୍ରଭୁଙ୍କ ସହିତ ଶ୍ରୀଗୌରହରିଙ୍କୁ ଡାକିଲେ ସେ ଅଧିକ ଖୁସୀ ହୋଇ ଶୀଘ୍ର କୃପା କରିବେ ।

**ସୁବଳ**—ଆଜ୍ଞା, ଆପଣଙ୍କ ଅମୂଲ୍ୟ ଉପଦେଶ ମୋର ହୃଦୟରୁ ସମସ୍ତ ଭକ୍ତିବିପରୀତ ବାସନା ଦୂର କରି ଦେଇ ତହିଁରେ ଇଷ୍ଟଦେବଙ୍କ ସୁଖଚିନ୍ତା ସଞ୍ଚାର କରିଛି । ମୋର ସମସ୍ତ ସନ୍ଦେହ ଦୂର ହୋଇଛି । ଆପଣଙ୍କ ଉପଦେଶ ଅନୁଯାୟୀ ମୁଁ ସର୍ବଦା କିପରି ସାଧନରେ ବ୍ରତୀ ହୋଇପାରିବି, ସେହିପରି କୃପା କରିବା ପାଇଁ ଶ୍ରୀଚରଣରେ ଏକାନ୍ତ ପ୍ରାର୍ଥନା ।

**ବାବାଜୀ ମହାରାଜ**—ତୁମକୁ ସାଧନର କ୍ରମସୋପାନ କଥା ଆଉଥରେ କହୁଛି ଶୁଣ ।

(୧) ପ୍ରଥମେ ଉପଯୁକ୍ତ ସାଧୁଙ୍କ ସଙ୍ଗ କିପରି ଲାଭ କରିବ ସେଥିପାଇଁ ସର୍ବଦା କାନ୍ଦି କାନ୍ଦି ଶ୍ରୀଶ୍ରୀଗୌର-ନିତ୍ୟାନନ୍ଦଙ୍କ ଶ୍ରୀପାଦପଦ୍ମରେ ବ୍ୟାକୁଳ ପ୍ରାର୍ଥନା କରିବ ।

(୨) ତାଙ୍କ କୃପାରୁ ନିଶ୍ଚିତରୂପେ କୌଣସି ଗୌରାନୁଗ ମହତଙ୍କ ସଙ୍ଗ ତୁମକୁ ମିଳିବ ଏବଂ ତାଙ୍କ ଉପଦେଶ ଅନୁଯାୟୀ ତୁମେ ସାଧନରେ ବ୍ରତୀ ହେବ ।

(୩) ''ଜୀବେ ସମ୍ମାନ ଦିବେ ଜାନି କୃଷ୍ଣ ଅଧିଷ୍ଠାନ ।'' ଏହା ଶ୍ରୀଗୌରହରିଙ୍କ ଶିକ୍ଷା । ସେହି ଅନୁସାରେ ଭଗବଦଧିଷ୍ଠାନ ଜ୍ଞାନରେ ପ୍ରତ୍ୟେକ ଜୀବକୁ ସମ୍ମାନ ଦେବାକୁ ଆପ୍ରାଣ ଚେଷ୍ଟା କରିବ ଏବଂ କାହାରି ଦୋଷ ଦେଖିବ ନାହିଁ । କିଏ ମୋର ଅପକାର କରୁଥିଲେ କି ମୋର ନିନ୍ଦା କରୁଥିଲେ ମଧ୍ୟ ମୁଁ ତାର ମଙ୍ଗଳକାମନା ହିଁ କରିବି—ଏହିପ୍ରକାର ଭାବ ହୃଦୟରେ ସର୍ବଦା ଥିଲେ ନିଶ୍ଚିତରୂପେ ଏହି ଜନ୍ମରେ ହିଁ ଶ୍ରୀଗୌରହରିଙ୍କ କୃପାର ଭାଜନ ହୋଇପାରିବ ।

(୪) ତୁମର ଜୀବନ ନିର୍ବାହଠାରୁ ଆରମ୍ଭ କରି ଉପାସନା ପର୍ଯ୍ୟନ୍ତ ଯାବତୀୟ ଚେଷ୍ଟା ଯେପରି ଶ୍ରୀଶ୍ରୀଗୌର-ନିତ୍ୟାନନ୍ଦଙ୍କର ସୁଖକର ହୁଏ, ସେଥିପାଇଁ ସର୍ବଦା ତୀକ୍ଷ୍ଣ ଦୃଷ୍ଟି ରଖିବ ।

(୫) ସର୍ବଦା କାନ୍ଦି କାନ୍ଦି ''ଶ୍ରୀଶ୍ରୀନିତାଇ-ଗୌର-ସୀତାନାଥ'' ଏହି ନାମ କୀର୍ତ୍ତନ କରିବ ଏବଂ ଏହି ବ୍ୟାକୁଳଭାବଟି ଯେପରି ସର୍ବକ୍ଷଣ ହୃଦୟରେ ଦେଦୀପ୍ୟମାନ ରୁହେ, ସେଥିପାଇଁ ଯତ୍ନବାନ୍ ହେବ । ଏହି ବ୍ୟାକୁଳଭାବ ସର୍ବକ୍ଷଣ ହୃଦୟରେ ଥିଲେ ଅର୍ଥାତ୍ ଏହି ଭାବରେ ହୃଦୟ ସର୍ବଦା ଭାବିତ ହୋଇଥିଲେ ମୃତ୍ୟୁ ସମୟରେ ଅବଶ୍ୟ ସେହି ବ୍ୟାକୁଳ ଭାବ ହୃଦୟରେ ଜାଗିବ । ଏହିପରି ବ୍ୟାକୁଳ ପ୍ରାର୍ଥନା କରୁ କରୁ ଦେହତ୍ୟାଗ କଲେ ଇଷ୍ଟଦେବଙ୍କର ବିଶେଷ କୃପା ଲାଭ ହୋଇପାରିବ ବୋଲି ଶ୍ରୀଜୀବପାଦ ଶ୍ରୀଭକ୍ତିସନ୍ଦର୍ଭ ୧୬୬ତମ ଅନୁଚ୍ଛେଦରେ ଏହିପରି ଉଲ୍ଲେଖ କରିଛନ୍ତି—''ଅତ୍ର ମରଣେ ସର୍ବେଷାଂ

ଦୈନ୍ୟୋଦୟୋଽପି ଶ୍ରୀଭଗବତ୍‌କୃପାତିଶୟଦ୍ୱାରମିତି ଦ୍ରଷ୍ଟବ୍ୟମ୍'' ଅର୍ଥାତ୍ ମରଣକାଳରେ ସମସ୍ତଙ୍କର ଯେଉଁ ଦୈନ୍ୟର ଉଦୟ ହୋଇଥାଏ, ତାହା ଶ୍ରୀଭଗବାନଙ୍କର ଅତିଶୟ କୃପାଲାଭର ଦ୍ୱାରସ୍ୱରୂପ । ଅର୍ଥାତ୍ ମୃତ୍ୟୁ ସମୟରେ ତାଙ୍କୁ ବ୍ୟାକୁଳ ପ୍ରାର୍ଥନା କରୁ କରୁ କାନ୍ଦି କାନ୍ଦି ଦେହତ୍ୟାଗ କଲେ ତାଙ୍କର ହୃଦୟ ବିଗଳିତ ହୋଇଯାଏ । ତେଣୁ ସେ ଦର୍ଶନ ମଧ୍ୟ ଦେଇପାରନ୍ତି ବୋଲି ଶ୍ରୀଳ ପୁରୀଦାସ ଗୋସ୍ୱାମୀ ଠାକୁର କହିଯାଇଛନ୍ତି । ଏହା ଫଳରେ ତୁମର ବିଦ୍ୟାମୁକ୍ତି ଅର୍ଥାତ୍ ସତ୍ତ୍ୱଗୁଣରୁ ମୁକ୍ତି ହୋଇଯିବ । ତେଣୁ ତୁମେ ଆଉ ଏ କୃତଘ୍ନତାପୂର୍ଣ୍ଣ ଘୃଣ୍ୟ ସଂସାରକୁ ନ ଆସି ଗୋଲୋକରେ ତାଙ୍କ ନିତ୍ୟସେବାଲାଭର ଅଧିକାରୀ ହୋଇପାରିବ । ତୁମେ ସାରାଜୀବନ ଯେଉଁ ଭାବରେ ମଗ୍ନ ଥିବ, ମୃତ୍ୟୁସମୟରେ ତୁମ ହୃଦୟରେ ସେହି ଭାବ ଜାଗିବା ସ୍ୱାଭାବିକ । ଏକଥା ଶ୍ରୀକୃଷ୍ଣ ମଧ୍ୟ ଶ୍ରୀଗୀତାରେ କହିଛନ୍ତି ।

''ଅନ୍ତକାଳେ ଚ ମାମେବ ସ୍ମରନ୍ ମୁକ୍ତ୍ୱା କଳେବରମ୍ ।
ଯଃ ପ୍ରୟାତି ସ ମଦ୍ଭାବଂ ଯାତି ନାସ୍ତ୍ୟତ୍ର ସଂଶୟଃ ॥
ଯଂ ଯଂ ବାପି ସ୍ମରନ୍ ଭାବଂ ତ୍ୟଜତ୍ୟନ୍ତେ କଳେବରମ୍ ।
ତଂ ତମେବୈତି କୌନ୍ତେୟ ସଦା ତଦ୍ଭାବଭାବିତଃ ॥''

(ଶ୍ରୀଗୀ: ୮।୫,୬)

ଅର୍ଥାତ୍ ଯେ ମୃତ୍ୟୁସମୟରେ ମୋତେ ସ୍ମରଣ କରୁ କରୁ ଦେହତ୍ୟାଗ କରେ ସେ ସାକ୍ଷାତରେ ମୋ ସ୍ୱରୂପ ଲାଭ କରେ, ଏଥିରେ ସନ୍ଦେହ ନାହିଁ । ହେ ଅର୍ଜୁନ ! ଏ ଜଗତରେ ମନୁଷ୍ୟ ମୃତ୍ୟୁସମୟରେ ଯେଉଁ ଯେଉଁ ଭାବ ସ୍ମରଣ କରୁ କରୁ ଦେହତ୍ୟାଗ କରେ, ସେ ସର୍ବଦା ସେହି ବିଷୟକୁ ଭାବୁଥିବାରୁ ସେହି ଭାବକୁ ଅର୍ଥାତ୍ ସେହି ଭାବିତ ବିଷୟକୁ ହିଁ ଲାଭ କରିଥାଏ ।

ଆଉ ଗୋଟିଏ କଥା, ଶ୍ରୀଗୌରହରିଙ୍କ ଚିତ୍ତାକର୍ଷକ ସ୍ୱରୂପ ସମ୍ବନ୍ଧରେ ଶ୍ରୀଳ ସନାତନଗୋସ୍ୱାମିପାଦ ଯାହା ଉଲ୍ଲେଖ କରିଛନ୍ତି, ତାହା ଶୁଣିଲେ ତାଙ୍କ ପ୍ରତି ତୁମ ଚିତ୍ତ ଆକୃଷ୍ଟ ନ ହୋଇ ରହିପାରିବ ନାହିଁ । ତାହା ଏହିପରି—

''ସ୍ୱଦୟିତନିଜଭାବଂ ଯୋ ବିଭାବ୍ୟ ସ୍ୱଭାବାତ୍ ।
ସୁମଧୁରମବତୀର୍ଣ୍ଣୋ ଭକ୍ତରୂପେଣ ଲୋଭାତ୍ ॥
ଜୟତି କନକଧାମା କୃଷ୍ଣଚୈତନ୍ୟନାମା
ହରିରିହ ଯତିବେଶଃ ଶ୍ରୀଶଚୀସୂନୁରେଷଃ ॥

(ଶ୍ରୀବୃ:ଭା: ୧।୧।୩)

ଅର୍ଥାତ୍ ନିଜ ଭକ୍ତମାନଙ୍କ ପ୍ରତି ନିଜର ଯେଉଁ ପ୍ରୀତି, ତଦପେକ୍ଷା ନିଜ ପ୍ରତି ଭକ୍ତମାନଙ୍କର ଯେଉଁ ଅସାଧାରଣ ପ୍ରେମଭାବ, ତାହାର ପରମୋତ୍କର୍ଷ ବିଚାର କରି ଲୋଭବଶତଃ (ତାହା ଅନୁଭବ କରିବା ପାଇଁ) ଯେ ଭକ୍ତରୂପେ ଭୂତଳରେ ଶ୍ରୀନବଦ୍ୱୀପ ଧାମରେ ଅବତୀର୍ଣ୍ଣ ହୋଇଛନ୍ତି, ସେହି କନକକାନ୍ତି, ଯତିବେଶଧାରୀ ଶ୍ରୀକୃଷ୍ଣଚୈତନ୍ୟସଂଜ୍ଞକ ଶ୍ରୀଶଚୀନନ୍ଦନସ୍ୱରୂପ ସ୍ୱୟଂ ଶ୍ରୀକୃଷ୍ଣ ଜୟଯୁକ୍ତ ହୁଅନ୍ତୁ ।

ନିଜଭାବ–ଶ୍ରୀହରିଙ୍କର ନିଜ ଭକ୍ତମାନଙ୍କଠାରେ ଯେଉଁ ଭାବ, ତାହା ସେହି ଭାବ (ଅସାଧାରଣ ପ୍ରେମ) ସୁମଧୁର ଓ ପରମୋତ୍କୃଷ୍ଟ । ଶ୍ରୀହରିଙ୍କର ଭକ୍ତମାନଙ୍କ ପ୍ରତି ଏହି ଯେଉଁ ପ୍ରେମ, ତାହାଠାରୁ ଭକ୍ତମାନଙ୍କର ତାଙ୍କ ପ୍ରତି ଯେଉଁ ପ୍ରେମ ତାହା ଅସାଧାରଣରୂପେ ସୁମଧୁର ଓ ପରମୋତ୍କୃଷ୍ଟ, ଏହି ବିଚାର କରି ସେହି ଭାବପ୍ରାପ୍ତିଲୋଭରେ ଯେ (ଯେଉଁ ଶ୍ରୀକୃଷ୍ଣ) ଭକ୍ତରୂପେ ଅବତୀର୍ଣ୍ଣ ହୋଇଛନ୍ତି, ସେହି ଶ୍ରୀଶଚୀନନ୍ଦନ ହରି ସର୍ବୋତ୍କର୍ଷ ସହିତ ଜୟଯୁକ୍ତ ହୁଅନ୍ତୁ । ପୂର୍ବେ ସ୍ୱୟଂ ଶ୍ରୀକୃଷ୍ଣ ଯେଉଁ ଗୋପୀପ୍ରେମମାଧୁରୀର ବର୍ଣ୍ଣନା କରିପାରି ନାହାନ୍ତି, ଅଧୁନା ସେହି ଶ୍ରୀକୃଷ୍ଣ ଭକ୍ତରୂପେ ଅବତୀର୍ଣ୍ଣ ହୋଇ ସେହି ପ୍ରେମ ସ୍ୱୟଂ ଅନୁଭବ କରୁଛନ୍ତି । ଅତଏବ ଏହି ଶ୍ରୀକୃଷ୍ଣଚୈତନ୍ୟ ଅବତାରରେ ହିଁ ମହାନ୍ ଉତ୍କର୍ଷ ସିଦ୍ଧ ହୋଇଛି । ଏଠାରେ ଭକ୍ତର ଶ୍ରୀଭଗବାନଙ୍କ ପ୍ରୀତି ଉଦ୍ଦେଶ୍ୟରେ ଯେଉଁ ଅସାଧାରଣ ସ୍ୱାର୍ଥତ୍ୟାଗ ଓ ବ୍ୟାକୁଳତା, ତାହା ଶ୍ରୀକୃଷ୍ଣଚୈତନ୍ୟରୂପେ ଶ୍ରୀକୃଷ୍ଣ ନିଜେ ଆଚରଣ କରି ଶିକ୍ଷା ଦେଇଯାଇଛନ୍ତି । ସୁତରାଂ ଜୀବପ୍ରତି ତାଙ୍କ ଅପାର କରୁଣାର କଥା ଚିନ୍ତାର ଅତୀତ । ତେଣୁ ସେହି ଶ୍ରୀଚୈତନ୍ୟଙ୍କ ଆରାଧନା ଯେ ପ୍ରେମଲାଭର ସର୍ବଶ୍ରେଷ୍ଠ ସାଧନ, ଏହା କହିବା ଅନାବଶ୍ୟକ । ପ୍ରଥମ କଥା ଶ୍ରୀଗୌର ଯେ ଶ୍ରୀରାଧାଭାବବିଭାବିତ ଓ ଭକ୍ତଭାବ-ଅଙ୍ଗୀକାରକାରୀ ସ୍ୱୟଂ ଶ୍ରୀକୃଷ୍ଣ, ଏ ବିଷୟରେ ଆମର ଦୃଢ଼ବିଶ୍ୱାସ ନାହିଁ । ତେଣୁ ଆମେ ନାନାପ୍ରକାର କଳ୍ପନା ଜଳ୍ପନାରେ ମାତୁଛୁ । ଶ୍ରୀଗୌର ଯେତେବେଳେ ସ୍ୱୟଂ ଶ୍ରୀକୃଷ୍ଣ ଏବଂ ସେ ନିଜ ଭଜନର ପଥ ନିଜେ ଆଚରଣ କରି ଶିକ୍ଷା ଦେଇଗଲେ, ସେତେବେଳେ ତାଙ୍କୁ ଭଜନ କଲେ ଯେ, ଏହି ଜନ୍ମରେ ହିଁ ସିଦ୍ଧିଲାଭ ହୋଇପାରିବ, ଏଥିରେ କଅଣ ସନ୍ଦେହର ଅବକାଶ ଅଛି ? ସେ ଯେଉଁ ଶିକ୍ଷା ଦେଇଗଲେ ତାଙ୍କ ଅନୁଗତ ଗୋସ୍ୱାମୀମାନେ

ତାହାକୁ ଆହୁରି ପ୍ରାଞ୍ଜଳଭାବରେ ବୁଝାଇ ଦେଇଗଲେ । ସେ ଯେତେବେଳେ ସର୍ବଦା ଶ୍ରୀକୃଷ୍ଣସ୍ମୃତିରେ ବିଭୋର ହୋଇ ରହୁଥିଲେ, ବ୍ୟାକୁଳଭାବରେ ତାଙ୍କ ନାମ କୀର୍ତ୍ତନ କଲେ ତାଙ୍କ ହୃଦୟର ସେହି ଭାବ ଯେ ଅନାୟାସରେ ଆମ ହୃଦୟରେ ସଞ୍ଚାରିତ ହେବ, ଏଥିରେ କଅଣ ସନ୍ଦେହ ଅଛି ? ତା'ପରେ "ମନେ ନିଜ ସିଦ୍ଧ ଦେହ କରିୟା ଭାବନ" ଇତ୍ୟାଦି ଯେଉଁ ଶିକ୍ଷା ସେ ଦେଇଗଲେ, ତାଙ୍କୁ ବ୍ୟାକୁଳ ହୃଦୟରେ ଡାକିଲେ ଅଜାତରତି କର୍ମାଧିକାରୀ ଜୀବ ମଧ୍ୟ ଜାତରତି ଭୂମିକାର ସାଧନର ଏହି ଫଳ ଅବଶ୍ୟ ପାଇ ପାରିବ । ଚିନ୍ତା କର କି ଅଚିନ୍ତନୀୟ ସେ ଶ୍ରୀଗୌରକରୁଣା !

**ସୁବଳ**—କୃପାଶୀର୍ବାଦ କରନ୍ତୁ, ଆପଣଙ୍କ ଉପଦେଶକୁ ଅକ୍ଷରେ ଅକ୍ଷରେ ପାଳନ କରି ଯେପରି ଏହିପ୍ରକାର ସାଧନରେ ସର୍ବଦା ବ୍ରତୀ ହୋଇପାରିବି । ଆପଣଙ୍କ ଅପାର କରୁଣାରୁ ମୋର ହୃଦ୍‌ବୋଧ ହୋଇଛି ଯେ, ଆର୍ତ୍ତିଯୁକ୍ତ କ୍ରନ୍ଦନ ହିଁ ସର୍ବଶ୍ରେଷ୍ଠ ସାଧନ ଏବଂ ଏହି କ୍ରନ୍ଦନ ହିଁ ଇଷ୍ଟଦେବଙ୍କ ହୃଦୟକୁ ବିଗଳିତ କରି ତାଙ୍କୁ ଆମ ପ୍ରତି କୃପୋନ୍ମୁଖ କରାଇବ । ଏହି ବ୍ୟାକୁଳଭାବ ସର୍ବକ୍ଷଣ ହୃଦୟରେ ରହିଲେ ମୃତ୍ୟୁସମୟରେ ନିଶ୍ଚିତରୂପେ ସେହି ବ୍ୟାକୁଳତା ଜାଗିବ ଏବଂ ସେହି ବ୍ୟାକୁଳତା ନେଇ ତାଙ୍କୁ କାନ୍ଦି କାନ୍ଦି ଡାକୁ ଡାକୁ ପ୍ରାଣତ୍ୟାଗ କଲେ ତାଙ୍କର ବିଶେଷ କୃପା ମିଳିବ ଅର୍ଥାତ୍ ତାଙ୍କ ଦର୍ଶନ ମଧ୍ୟ ମିଳିଯାଇପାରେ । ଏହା ହିଁ ସାଧନର ସର୍ବୋତ୍ତମ ଫଳ ଏବଂ ଏହାରିଦ୍ୱାରା ଜୀବ ଗୋଲୋକରେ ଶ୍ରୀକୃଷ୍ଣଙ୍କର ନିତ୍ୟସେବା ଲାଭ କରି ତାର ଜନ୍ମ ସାର୍ଥକ କରି ପାରିବ ।

**ବାବାଜୀ ମହାରାଜ**—ବାଃ, ସୁବଳ, ତୁମର ଏହି ବିଚାର ଯେ ସର୍ବୋତ୍ତମ, ଏଥିରେ ଦ୍ୱିମତ ହେବାର କିଛି ନାହିଁ । ତୁମେ ଅବଶ୍ୟ ଏହି ଜନ୍ମରେ ହିଁ ସାଧନରେ ସିଦ୍ଧିଲାଭ କରି ଶୁଦ୍ଧଭକ୍ତ ହୋଇ ପାରିବ ।

**ସୁବଳ**—ଆଜ୍ଞା, ଆପଣଙ୍କ କୃପୋପଦେଶରୁ ମୋର ହୃଦୟରୁ ସମସ୍ତ ଭକ୍ତି ବିପରୀତ ବାସନା ଦୂର ହୋଇ ତହିଁରେ ଭକ୍ତିବାସନା ସଞ୍ଚାରିତ ହୋଇଛି । ଏ ଅଧମର ମସ୍ତକରେ ପାଦପଦ୍ମ ଧାରଣ କରି ଏହି କୃପାଶୀର୍ବାଦ କରନ୍ତୁ, ଯେପରି ସେ ଶୁଦ୍ଧଭକ୍ତି ସାଧନର ସୋପାନକୁ କ୍ରମପନ୍ଥାରେ ଉନ୍ନୀତ ହୋଇ ନିଜକୁ ଶୁଦ୍ଧଭକ୍ତିସାଧନର ଯୋଗ୍ୟ କରିପାରେ ।

ଆପଣଙ୍କ କୃପାଶୀର୍ବାଦ ହିଁ ମୋ ପରି ପତିତ ଜୀବର ଏକମାତ୍ର ସମ୍ବଳ । ‘‘ସହାୟୋ ମେ ମାତ୍ରଂ ବିତଥଦଳନୀ ବୈଷ୍ଣବକୃପା ।’’

---